ଜୀବନଟା ନୁହେଁ
ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଏକ ଚଲାପଥ
ଜୀବନର ଅନ୍ୟନାମ ସଂଘର୍ଷ
ସେହିପରି ଏକ ସଂଘର୍ଷ ଓ ଆଦର୍ଶମୟ ଜୀବନର ଆତ୍ମକଥା

# "ଭୀକାରୀ ମାଷ୍ଟ୍ରେ"



ଶ୍ରୀ ଭୀକାରୀ ଚରଣ ମହାନ୍ତି
ସୁନ୍ଦରଗ୍ରାମ, କଟକ






# ଭିକାରୀ ମାଷ୍ଟ୍ରେ

## ଶ୍ରୀ ଭିକାରୀ ଚରଣ ମହାନ୍ତି

ପ୍ରାଥମିକ ଶିକ୍ଷକ (ଅବସର ପ୍ରାପ୍ତ)

ଜୀବନର ଉତ୍ସ ସଦ୍‌ଗୁରୁ
ପରମ ଦୟାଲ
ଶ୍ରୀ ଶ୍ରୀ ଠାକୁରଙ୍କ
ଚରଣ ପଙ୍କଜରେ
ବିନମ୍ର
ଶ୍ରଦ୍ଧାଞ୍ଜଳି
-ଭିକାରୀ ଚରଣ ମହାନ୍ତି

## ବାଲ୍ୟବନ୍ଧୁ, ଅବସର ପ୍ରାପ୍ତ ପ୍ରଧାନଶିକ୍ଷକ, ଶ୍ରୀ ବଳରାମ ଦାଶଙ୍କ କଲମରୁ...

ସୁନ୍ଦରଗ୍ରାମ ଏ ଅଞ୍ଚଳର ଏକ ପ୍ରଖ୍ୟାତ ଗ୍ରାମ । ଏ ଗ୍ରାମରେ ବହୁ ଶିକ୍ଷିତ ବ୍ୟକ୍ତି ବସବାସ କରନ୍ତି । ସ୍ୱାଧୀନତାର ବହୁପୂର୍ବରୁ ସୁନ୍ଦରଗ୍ରାମ ଏ ଅଚଳରେ ଶିକ୍ଷାର ଆଲୋକ ଜାଳିଛି । ପିଲାବେଳୁ ସାଥି ଭିକାରୀ, ଉପେନ୍ଦ୍ର, ମୁରଲିବାବୁଙ୍କ ସହ ଶିକ୍ଷାର ଉନ୍ନତି ପାଇଁ ଆମେ ଆଗେଇ ଯାଇଥିଲୁ ଏବଂ ଗ୍ରାମରେ ୧୯୧୫ ମସିହାରୁ ସ୍ଥାପିତ ଡ୍ରାମାଟିକ ସଂସ୍ଥାକୁ ସଫଳ ରୂପାୟନ ଦେବାରେ ବିଶେଷ ସହାୟତା ଦେଇଥିଲୁ ।

ଯଦିବା ଭିକାରୀ, ଉପେନ୍ଦ୍ର ମୋ ଠାରୁ ବୟସରେ ବଡ ଆମେ କିନ୍ତୁ ସମସ୍ତେ 'ନାଁ' ଧରି ଡକା ଡକି ହେଉ । ଆମ ଭିତରେ ଖୁବ୍ ଆନ୍ତରିକତା ଥାଏ ।

ଭିକାରୀର ବାଲ୍ୟାବସ୍ଥା ଖୁବ୍ ଅନାଟନ ମଧ୍ୟରେ କଟିଛି । ସେ ଅଧିକାଂଶ ସମୟ ପଖାଳ, କଖାରୁ ସାଗ ଭଜା ଖାଉଥିବାରୁ ତାକୁ ସାଗଖିଆ ଭିକାରୀ ଡାକୁଥିଲେ । ଭିକାରୀ ଘର ଥିଲା ଆମ ସମସ୍ତ (ସମସାମୟିକ ପିଲା) ଙ୍କର କୋଠଘର, ଆମର ଅଧିକାଂଶ ସମୟ ତା'ଘରେ କଟୁଥିଲା । ଗ୍ରାମର ଡ୍ରାମାଟିକ ସଂସ୍ଥାର ସିନ୍, ସିନେମା ଡ୍ରେସ ଆଦି ତାଘରେ ରହୁଥିଲା ।

ଭିକାରୀଙ୍କ ଘର ଥିଲା ପୂର୍ବରୁ ଘରୁଆ ଘର । ତାର ଜେଜବାପା ଥିଲେ ସେ ସମୟରେ ଓଭରସିଅର । ଆମ ଦେଖିବାର ତାଙ୍କର ଏକ Under Ground କୋଠାଘର ଥିଲା । ସେଥିରେ ଏକ ଲୁହା କଡିରେ ଦୁଇଟି ବଡ ପିତଳ ଗରା ଝୁଲୁଥିଲା । ପ୍ରବାଦ ଥିଲା ଯେ ସେ ଗରା ମଧ୍ୟରେ ଗଚ୍ଛିତ ଥିବା ରୂପାଟଙ୍କା ପାଣି ହୋଇଯାଇଥିଲା ।

ଭିକାରୀର ବୋଉ ଓ ବଡବୋଉ ଆମକୁ ବହୁତ ଶ୍ରଦ୍ଧା କରୁଥିଲେ ।

ପରେ ସେହି ଶ୍ରଦ୍ଧା ଓ ସ୍ନେହ, ଭିକାରୀର ଭାଉଜ (କିନି ବୋଉ) ଏବଂ ତା ସ୍ତ୍ରୀ ବଜାଏ ରଖିଲେ । ଭିକାରୀ ବାଡିରେ ଲେମ୍ବୁ ଓ ବେଲଗଛ ଥାଏ । ପ୍ରଥମ ପାଚିଲା ବେଲ ମୋତେ ଦେବାର ପରମ୍ପରା । ଭିକାରୀ ବଡବୋଉଙ୍କ ସମୟରୁ ଗଛ ବଞ୍ଚିବା ପର୍ଯ୍ୟନ୍ତ ପ୍ରଚଳିତଥିଲା ।

ଭିକାରୀ ବହୁତ ଖାଦ୍ୟ ପ୍ରିୟ । ମୁଁ ସବୁଠାରେ ଖାଇବାକୁ ଭଲପାଏ ନାହିଁ, କିନ୍ତୁ ଭିକାରୀକୁ ଯିଏ ଯେତେବେଳେ ଖାଇବାକୁ ଡାକନ୍ତି ସେ ସମସ୍ତଙ୍କ ଶ୍ରଦ୍ଧା ରଖିଥାଏ । ଭିକାରୀ ଡ୍ରାମାରେ ଖୁବ ଭଲ ରୋଲ କରୁଥିଲା ।

ତାର ଘରର ଚଳନୀ ଅତିମାର୍ଜିତ ଏବଂ ପରିଷ୍କାର ଥିବାରୁ ମୁଁ ତାଙ୍କଘରେ ଓଷା ପର୍ବରେ ପିଠାପଣା ଖାଇଥାଏ । ତାପରି ଖୋଲା ମିଞ୍ଜାସର ଲୋକ କ୍ୱଚିତ୍ ଦେଖିଛି । ବହୁତ ସ୍ୱାଭିମାନି, ଅନେକ ଅସୁବିଧାରେ ଥାଇ ମଧ ସେ କେବେ ସାଲିସ କରିନାହିଁ । ଡ୍ରାମାରେ ସେ ସର୍ଦ୍ଦାର ହୋଇ ମୋ ଉପରକୁ (ବିଦ୍ୟାପତି) ସର ନିକ୍ଷେପ କରିଥିଲା ଏବଂ ସେ ସର ମାଡରେ ମୁଁ ଚେତାଶୂନ୍ୟ ହୋଇଥିଲି । ଭିକାରୀ ମର୍ମାହତ ହୋଇ ଦିନବନ୍ଧୁ ମିଶ୍ରଙ୍କ କୂଅରେ ଆତ୍ମ ହତ୍ୟା କରିବାକୁ ଯାଉଥିବା ସମୟରେ ମୋର ଚେତା ଆସିଲା । ଶୁଣି, ସେ ମୋ ନିକଟକୁ ଧାଇଁ ଆସି ଯେପରି କାନ୍ଦିଲା ସମସ୍ତେ ଦେଖି ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ଏପରି ବନ୍ଧୁ ସ୍ନେହ, ଆନ୍ତରିକତା କ୍ୱଚିତ ଦେଖାଯାଏ ।

ଜଣେ ପ୍ରାଥମିକ ଶିକ୍ଷକ ଭାବରେ ବହୁ ସମ୍ମାନ ଓ ଶ୍ରଦ୍ଧାର ଅଧିକାରୀ ହୋଇଛି । ସେ ଯେପରି ସୁନାମ ଅର୍ଜନ କରିଛି; ଏହା କ୍ୱଚିତ୍ ଶିକ୍ଷକଙ୍କ ଭାଗ୍ୟରେ ମିଳିଥାଏ । ଆମ ଗାଁ ହାଇସ୍କୁଲରୁ, ମୁଁ, ଗଦାଧର ଭାଇନା (ଧଡି ଭାଇନା) ହରିବାବୁ ଭିକାରୀ ଶିକ୍ଷକତା ଆରମ୍ଭ କରିଥିଲୁ । ଆମେ ସମସ୍ତେ ସାର ହୋଇଗଲୁ । କିନ୍ତୁ ସମସ୍ତଙ୍କ ମୁହଁରେ ଭିକାରୀ ହେଲା "ଭିକାରୀମାଷ୍ଟ୍ରେ" ଏବେ ବି, ମୋର ଯିଏ ଦେଖାହୁଅନ୍ତି ପଚାରନ୍ତି "ଭିକାରୀ ମାଷ୍ଟ୍ରେ" କିପରି ଅଛନ୍ତି ।

ଯଥାର୍ଥରେ ସେ ମାଷ୍ଟ୍ର ଏବଂ ମାଷ୍ଟ୍ରର ପଦବାଚ୍ୟ।

# ତୃତୀୟ ପୁରୁଷ ହିତୀସୁନ୍ଦରଙ୍କ କଲମରୁ...

ସବୁଠାରୁ ଯିଏ ଆମ ଘରେ ବଡ
ଡାକିଥାଏ ତାଙ୍କୁ ଜେଜେ,  - ୧

ଦୁଷ୍ଟାମି କରିଲେ ବଡପାଟିକରି
ଶୁଆଇ ଦିଅନ୍ତି ଶେଜେ

ଆମ ଅଂଚଳର ଛୋଟଠାରୁ ବଡ
ସଭିଏ ଡାକନ୍ତି ମାଷ୍ଟ୍ରେ

କିଏ ସେ ନଜାଣେ ଭିକାରୀମାଷ୍ଟଙ୍କୁ
ଦେଶ ଓ ଦରିଆ ପାରେ  - ୨

ଇଂଲଣ୍ଡ, ଜର୍ମାନ ଆଉ ଆମେରିକା
ଯାଇଛନ୍ତି ତାଙ୍କ ଛାତ୍ର

ଦେଶେ ଦେଶେ ଥାଇ ଉଚ୍ଚପଦବୀରେ
ବଖାଣନ୍ତି ତାଙ୍କ ମନ୍ତ୍ର  - ୩

ବୟାନବେ ବର୍ଷ ଶରୀର ଅବସ
ଶୁଣି ନପାରନ୍ତି ଭଲ

ତଥାପି ପଢନ୍ତି ଖବର କାଗଜ
ବୁଝିବାକୁ ଦେଶ ହାଲ  - ୪

ବିଦେଶରୁ ଆସି ବହୁଛାତ୍ର ତାଙ୍କ
ପାଦଧୂଳି ନେଇଥାନ୍ତି

ଗୁରୁ ଆଶୀର୍ବାଦ ଶିଷ୍ୟର ପାଥେୟ
ହସି ହସି କହିଥାନ୍ତି  ୫

ଆଦର୍ଶ ଶିକ୍ଷକ ଭିକାରୀ ଚରଣ
ତମ ସୁକୃତରୁ ଆମ

ଆମଗୋଡୁ କଣ୍ଟା ଦୂରେଇ ଯାଇଛି
ବଂଚିଥିବୁ ଯେତେ ଦିନ  - ୬

ନବୀନା
(ଟନିର ପୁଅ)

## (କ)

କଟକ ଜିଲ୍ଲା ଗୋବିନ୍ଦପୁର ନାମ ଓଡିଶାରେ ବ୍ରିଟିଶ୍ ଶାସନ ସମୟରୁ ଏକ ବିଶେଷ ସ୍ଥାନ ଅଧିକାର କରିଛି । ଦେବୀନଦୀ ସନ୍ନିକଟ ଗୋବିନ୍ଦପୁର ଠାରୁ ପଶ୍ଚିମ ପଟକୁ ୩ କିଲୋମିଟର ଗଲେ ନୁଆଁଗା ଶାସନ ଗ୍ରାମ । ଯେଉଁ ଗ୍ରାମରେ ଅଧିକ ବ୍ରାହ୍ମଣ ଥାଆଁନ୍ତି, ସାଧାରଣତଃ ସେ ଗ୍ରାମକୁ ଶାସନ କୁହାଯାଏ । ଯଦି ନୁଆଗାଁ ଶାସନରେ ମୋଟେ ବ୍ରାହ୍ମଣ ନାହାନ୍ତି ତଥାପି ରାଜସ୍ୱ ନଥିରେ ଏବଂ ଲୋକ ମୁଖରେ ଏହାର ନାମ ନୁଆଗାଁ ଶାସନ, ଯେଉଁଠି ମୋର ଜନ୍ମସ୍ଥାନ । ଗାଁ ଚାରିପଟେ ଘଞ୍ଚ ନଡିଆଗଛ ଓ ଚାଷ ଜମି । ଅନ୍ୟାନ୍ୟ ଗଛ ରହିଥିଲେ ମଧ୍ୟ ଗାଁ ମୁଣ୍ଡର କଦମ୍ବ ଗଛ ଏକ ବିଶେଷତ୍ୱ । ଏହି ସ୍ଥାନକୁ କହନ୍ତି କଦମ୍ବ ମୂଳ । ସମୟ କ୍ରମେ ଗଛଟି ମରିଯାଇଥିଲେ ମଧ୍ୟ କଦମ୍ବମୂଳ ନାମକୁ ସାର୍ଥକ କରିବାକୁ ଆଉ ଏକ ବିରାଟ କଦମ୍ବଗଛ ସେଠାରେ ବଢି ଉଠିଛି । ତା ନିକଟରେ ଥିବା ପୋଖରୀକୁ ମଧ୍ୟ କଦମ୍ବ ଗାଡିଆ କହନ୍ତି, ପାଖରେ ନୂତନ ଭାବରେ ଗଢିଉଠିଛି ଏକ ସ୍କୁଲ୍ ଘର ।

ବିଭିନ୍ନ ଜାତିର ଲୋକମାନଙ୍କୁ ନେଇ ଗାଁଟି ଗଢିଉଠି ଥିଲେ ମଧ୍ୟ ଦୁଇଗୋଟି କରଣ ପରିବାର ସେ ସମୟରେ ଗାଁରେ ମୁଖ୍ୟ ସ୍ଥାନ ଅଧିକାର କରିଥିଲେ । ବର୍ତ୍ତମାନ ସେ ଦୁଇଟି ପରିବାର ବଢି ପାଖାପାଖି ତିରିଶିରେ ପହଞ୍ଚିଲାଣି । ତା ମଧ୍ୟରୁ ଗୋଟିଏ ପରିବାରରେ ମୋର ଜନ୍ମ ୧୯୧୬-୧୭ ମସିହାରେ ମୋ ବାପାଙ୍କ ନାମ ପାଶୋରି ମହାନ୍ତି (ନାରାୟଣ ମହାନ୍ତି) ମାଙ୍କ ନାମ ଶଚି ଦେଇ । ମୁଁ ଥିଲି ମୋ ବାପାଙ୍କର ତୃତୀୟ ସ୍ତ୍ରୀଙ୍କର ଚତୁର୍ଥ ସନ୍ତାନ ।

## (ଖ)

ଆମ ପରିବାର ଥିଲା ଏକ ବଡ ଯୌଥ ପରିବାର । ବାପା, ଦାଦା (ଦୁଇଜଣ) ଆମେ ଭାଇ ଭଉଣୀ (ସାନ) ଦାଦାଙ୍କର ପୁଅ, ଝିଅ ଥିଲେ ଛଅଜଣ । ଏବଂ ଅନ୍ୟ ଅଂଶର ସ୍ୱର୍ଗତ ଭିକାରି ଭାଇ ଏବଂ ହାଡୁ ଭାଇଙ୍କ

ପରିବାର । ପରିବାର ମଧ୍ୟରେ ସବୁଠାରୁ ବଡ ଥିଲେ ମୋର ବୁଢି ମା । ସେଥିଲେ ପରିବାରର ମୁଖ୍ୟ । ମୋର ଭାଇ, ବଡ ଭାଇ ୰ ନିତ୍ୟାନନ୍ଦ ଆମ ମାନଙ୍କ ଠାରୁ ବୟସରେ ବଡ ଥିଲେ । ଆମେ ତାଙ୍କୁ ଭୟ କରୁ । ଆମ ଦାଦା ସ୍ୱର୍ଗତ ପଦ୍ମଚରଣ ଆମ ମାନଙ୍କ ବୟସରୁ ଅଳ୍ପ ଅଧିକ ଥିବାରୁ ସେ ଆମ ସହିତ ମିଶୁ ଥିଲେ । ଗୋକୁଳି ଭାଇ, ପରିଭାଇ, କେଳା, ପିରଅପା, ମୋ ଭାଇ ଭଉଣୀ, ଚିତ୍ରା ଅପା, ସାର ଅପା, ବୀରଭାଇ ରାଜୁ ଭାଇ, ପାର, ଦାଦାଙ୍କ ପିଲା, ସୁଦର୍ଶନ, ଜନାର୍ଦ୍ଦନ, ବୃନ୍ଦାବନ, ମଧୁ ଏବଂ ଇଚ୍ଛା ଭିକାରୀ ଭାଇଙ୍କ ପିଲା ଏ ସମସ୍ତଙ୍କର କଥା ବୁଝୁଥିଲା ଆମ ବୁଢୀମା ।

ରାତି ପାହିଲେ ଆମେ ସମସ୍ତ ପିଲା ବୁଢୀ ମା ପାଖରେ ପହଞ୍ଚୁ । ସେ ଆମକୁ ବାରି ଆଡକୁ ନେଇ ନିତ୍ୟକର୍ମ କରାଇସାରି ବାଙ୍ଗିମୂଳରେ ବସାଏ । ସବୁରି ହାତରେ ଖଣ୍ଡେ ଗଇଁଠା ପାଉଁଶ, ବାଉଁଶ ଦାନ୍ତକାଠି ପାତିଆ ଧରାଇ ଦାନ୍ତ ଘସିବାକୁ ନିର୍ଦ୍ଦେଶ ଦିଏ । ବୁଢୀମାର ପିଲାମାନଙ୍କର ଲାଳନ ପାଳନ ଶୈଳୀ ପରେ କହିବି । ଆମର ମକଦମୀ ଥାଏ । ଦାଦା (ବନମାଳୀ) ସମସ୍ତ ସୀରସ୍ତା ବୁଝନ୍ତି । ଖଜଣା ଆଦାୟ କରନ୍ତି । ବାପାଙ୍କର କାମହେଲା ଚାଷ କଥା ବୁଝିବା । ତିନିହଳ ବଳଦ, ୩ଜଣ ବାରମାସିଆ ଚାକର ଦୁଇଟି କୋଠିଆ ଓ କୋଠି–ଆଣିକୁ ନେଇ ବାପା ଚାଷ କାର୍ଯ୍ୟ ବୁଝନ୍ତି । କୋଠିରେ ଧାନ ରହିଲା ପରେ ପ୍ରତ୍ୟେକ ଘରେ ଧାନ, ବିରି ଓ ମୁଗ ଓଳିଆ ଭରପୁର ଥାଏ । ଏପରିକି ଆମେ ଅଧିକ ପିଲା ହୋଇଥିବାରୁ ଅନେକ ସମୟରେ ଆମକୁ ଓଳିଆ ଉପରେ ଶୋଇବାକୁ ହୁଏ ।

ସକାଳୁ ବାପା ତାଙ୍କ ନିତ୍ୟକର୍ମ ସାରି ଚଉପାଡିରେ ବସନ୍ତି । ଚଉପାଡି ସାମ୍ନାକୁ ଭାଗବତ ଘର ନନା ଭାଗବତ ଗୋସାଇଁଙ୍କୁ ପାଣି ଦେଇସାରି ଚଉପାଡିରେ ବାପା ଏବଂ ଦାଦାଙ୍କୁ ପାଦୁକ ଦିଅନ୍ତି । ଦାଦା ବାପାଙ୍କ ସହ ସୀରସ୍ତା ସମ୍ବନ୍ଧରେ ଆଲୋଚନା କରି ବାହାରକୁ ଯାଆନ୍ତି । କୋଠିଆ ପ୍ରଭୃତିଙ୍କୁ ବାପା ବିଭିନ୍ନ କାମର ନିର୍ଦ୍ଦେଶ ଦେଇଥାନ୍ତି । ସଂଧ୍ୟାରେ ଦାଦା ଫେରିଲେ କୋଠି ଖୋଲି ମଜୁରୀ ଆକାରରେ ମୂଲିଆ ମାନଙ୍କୁ ଧାନ ଦେଇଥାନ୍ତି । ଆଜିବି ମୋର

ମନେପଡେ ବାପା ଯେପରି ସ୍ନେହରେ ଦାଦାଙ୍କୁ ଆରେ "ବନା" ବୋଲି ଡାକନ୍ତି । ସେ ସମୟର ଧାନଗଦା, ମୁଗ, ବିରି ଓଳିଆ ଆଦି ଯେପରି ସଂପୂର୍ଣ୍ଣ ସ୍ୱପ୍ନ ହୋଇଯାଇଛି ।

## (ଗ)

ଆମ ବୁଢିମାର ନିତିଦିନିଆ ଚଳଣି ବିଷୟରେ କହିବାକୁ ଶ୍ରେୟ ମନେକରୁଛି । କାରଣ ତାର ବଳିଷ୍ଠ ନେତୃତ୍ୱ ଏବଂ କର୍ତ୍ତବ୍ୟ ନିଷ୍ଠା ଏତେବଡ ପରିବାରକୁ ଏକ ଅନ୍ନରେ ରଖିପାରିଥିଲା । ଶ୍ୟାମଳ ରଙ୍ଗ, ଉଚ୍ଚତା ମଧ୍ୟମ, ଖୁବ୍ ସୁନ୍ଦର ସ୍ୱାସ୍ଥ୍ୟ । ସେ ମରିଗଲା କିନ୍ତୁ ତା ମୁଣ୍ଡର ଚୁଟି ପାଚି ନଥିଲା, କି ଦାନ୍ତବି ପଡିନଥିଲା । ରାତି ତିନିଟାରୁ ବିଛଣା ଛାଡି ଧାନ ଉସାଁଇବାକୁ ବସିଯାଏ । ସେ ଧାନ ମଧ୍ୟରେ ପୂର୍ବରାତିରୁ ବାଟିଥିବା ବିରିକୁ ବାମ୍ଫରେ ସିଝାଇ ପିଠା କରିଥାଏ । ଘରର ବଡ ଲୋକ (ପୁରୁଷମାନେ) ସେ ପିଠା ଖାଇ ଯୋଝାବାଟରେ ବାହାରି ଯାଆନ୍ତି । ତାପରେ ବୁଢିମା ଧାନକୁ ସୁଖାଇ ଆମ ପାଇଁ ସେହି ଚୁଲି ରଡରେ ବସାଏ ଘଡିଭାତ । ସେହି ସମୟ ମଧ୍ୟରେ ସେ ଏତେଗୁଡିଏ ପିଲାଙ୍କର ପ୍ରାତଃକର୍ମ କରାଇସାରି ଧାଡିବାନ୍ଧି ବସାଇଦିଏ । ଛୋଟ ଛୋଟ କଦଳୀ ପତ୍ରରେ ଘଡିଭାତ ଆମ ମାନଙ୍କୁ ବାଢିଦିଏ । ଆଜିକାଲି ଛୋଟ ପିଲାଙ୍କୁ ଘିଅ ଖାଇବାକୁ ଦିଆଯାଉନାହିଁ । କିନ୍ତୁ ଆମ ବୁଢିମା ପିଲାମାନଙ୍କୁ ପ୍ରତ୍ୟେକଦିନ ଘଡିଭାତରେ ଘିଅ ପକାଇ ଖୁଆଉ ଥିଲା । ମୋର ପରିଣତ ବୟସରେ ମୁଁ ସେ ଘିଅ ଖିଆର କୁପ୍ରଭାବ ଏ ପର୍ଯ୍ୟନ୍ତ ଅନୁଭବ କରିନାହିଁ ।

ଘଡିଭାତ ଖାଇସାରିଲା ପରେ ଆମକୁ କଳା ଲଗାଇଦେଇ ହାତରେ ଖଣ୍ଡେ ଖଣ୍ଡେ କୋଚିଲା ଖଡି ଧରାଇ ଭାଗବତ ଘର ବାରଣ୍ଡାକୁ ପାଠ ପଢାଇବା ପାଇଁ ଅବଧାନଙ୍କ ନିକଟକୁ ପଠାଏ । ଆମ ମା ମାନେ ସିନା ଆମକୁ ଜନ୍ମ ଦେଇଥିଲେ କିନ୍ତୁ ବୁଢିମା ଆମକୁ ପାଳିଥିଲା । ଆଶ୍ଚର୍ଯ୍ୟ ଲାଗେ ସମସ୍ତ କାର୍ଯ୍ୟ ମଧ୍ୟରେ ସେ କିପରି ଆମ ଘରର ୧୬ ଜଣ ପିଲାଙ୍କ କଥା କାହାକୁ ଅପେକ୍ଷା ନକରି ବୁଝିଥାଏ ।

ଆମ ମାନଙ୍କ ସକାଳର କାମ ସାରି ବୁଢିମା ଯାଏ ନାହା ଗାଡିଆକୁ ଗାଧୋଇ । ଗାଧୋଇବା ପୂର୍ବରୁ ଗାଡିଆ ହୁଡାରୁ ବିଭିନ୍ନ ପ୍ରକାର ଶାଗ ତୋଳିନେଇ ତୁଠ ପଥର ଉପରେ ଧୋଇ ରଖେ ଏବଂ ଗାଧାଏ । ଗାଧୋଇ ସାରି ଓଦାଲୁଗାରେ ଶାଗ ଘରକୁ ଆଣି ପଲମରେ ଯୋଗାଡି ଦିଏ । ବୋହୂମାନଙ୍କୁ "ଶାଗକୁ ଦେଖୁଥିବ" କହି ତିଳକ କରିବାକୁ ଚାଲିଯାଏ । ଘରର ସମସ୍ତ ସ୍ତ୍ରୀ ଲୋକଙ୍କ ସହିତ ବୁଢିମା ବସି ପଖାଳ ସହିତ ଶାଗର ମଜା ନିଏ ।

ଆମେ ପିଲାମାନେ ପାଠପଢି ଫେରିଲା ପରେ ଆମକୁ ଗାଡିଆରେ ଗାଧୋଇ ଆଣେ । ଖାଇବାକୁ ଦେଇ ଗପ କହି ଶୋଇବାକୁ ନେଇଥାଏ । ବୁଢିମାର କାମ ସରେ ବିଳମ୍ବ ରାତିରେ । ଆଗାମୀ କାଲି ନିମନ୍ତେ ବିରିବଟା ସାରି ସେ ସମସ୍ତେ ଶୋଇଲା ପରେ ବିଛଣାକୁ ଯାଏ ।

## (ଘ)

ମୋ ବାପା ପାଶୋରୀ ମହାନ୍ତିଙ୍କର ମାଗୁଣୀ ବୋଲିଥିଲା ଭଉଣୀ, ସେ ସୁନ୍ଦରଗ୍ରାମର ସଦାନନ୍ଦ ମହାନ୍ତିଙ୍କୁ ବିଭା ହୋଇଥିଲା । ତାର ପୁଅ ନଥିଲା, ଗୋଟିଏ ଝିଅ ତା'ର ନାମ ସୁନ୍ଦରମଣୀ । ମାଗୁଣୀ ମତେ ପୁଅ କରି ଆଣିବାକୁ ମନବଳାଇଥିଲା । କାରଣ ସେ ଅପୁତ୍ରିକଥିଲେ । ମୋର ବଡ ଭାଇ ନିତ୍ୟାନନ୍ଦ ମତେ ଅତି ସ୍ନେହ ଶ୍ରଦ୍ଧା କରନ୍ତି । ତାଙ୍କର ପ୍ରଥମ ବିବାହ ଧୂଳିସରରେ; ହଇଜାରେ ସେ ଭାଉଜ, ମୋ ଭଉଣୀ ପାଲି, ଭାଇକେଳା, ଏବଂ ପୂଜ୍ୟ ଭିକାରୀ ଭାଇଙ୍କ ମୃତ୍ୟୁ ହୋଇଥିଲା । ପିଲାବେଳେ ନୂଆଗାଁରେ ଦନେଇ, ନନ୍ଦ, ରସାନନ୍ଦ, ବଂଶୀ, ବିଚ, ଗେଣ୍ଡୁଆ ଓ ବୈଷ୍ଣବଙ୍କ ସହିତ ଖେଳ କୁଦରେ କଟାଉଥିଲି ।

ଦାଦି ବନମାଳି ମହାନ୍ତିଙ୍କର ପୁଅ ବୀରଭାଇ, ରାଜୁଭାଇ, ନନ୍ଦ ଆଦି ମଧ୍ୟ ଆମ ସଙ୍ଗେ ଖେଳୁଥିଲେ ଥରେ – ବାପା ସୁନ୍ଦର ଗ୍ରାମରେ ଥିବା ଭଉଣୀ ଘରକୁ ଯାଇଥିଲେ ସାଥିରେ ଭଉଣୀକୁ ନେଇ ନୂଆଗାଁ ଆସିଲେ । କନ୍ଦମ୍ଭ ମୂଳରୁ ତାଙ୍କ ଭଭଉଣୀ ମାଗୁଣୀ ଅପା, କାହ୍ନୁନି, ବାହ୍ନୁନି ଘରକୁ ଗଲେ; "ଭାଇ

ଥାଳଧରି ଭିକମାଗି ଆସିଛି ହେ ଭାଇ" "ଅପୁତ୍ରି ବୋଲି ମୋତେ ଦେଉନ ମନାହେ ଭାଇ"

ସେ ଆମଘରେ ୨୦ ରୁ ୨୫ ଦିନ ରହିଲେ । ଆମ ଭିତରୁ ଜଣକୁ ପୁଅକରି ନେବାପାଇଁ । ମୋ କଥା ଯେତେବେଳେ ଉଠିଲା, ବୁଢୀମା ଓ ଖୁଡୀ ମନାକଲେ କହିଲେ – ପରିଆ ଯାଉ । ମୋ ବୋଉ ଓ ବାପା ବୁଢୀମାର କଥା ରଖିପାରିଲେ ନାହିଁ । ମୋର ସୁନ୍ଦରଗ୍ରାମକୁ ପୁଅ ହୋଇଯିବାର ସ୍ଥିର ହେଲା । ଗାଡି ସଜଡ ହୋଇ ଦାଣ୍ଡରେ ଲାଗିଲା । ଆମ ଦୁଇ ଖଞ୍ଜାର ଥିବା ସମସ୍ତ ସ୍ତ୍ରୀଲୋକ ଦାଣ୍ଡ ପିଣ୍ଡାରେ ଶାଶୁ ଘରକୁ ଝିଅ ଯିବାପରି ବସିକାନ୍ଦୁଥାନ୍ତି । ବୋଉ ମୋର କାନ୍ଦିକାନ୍ଦି କାଖେଇ ଗାଡି ପାଖକୁ ଆଣିଲା । ମୁଁ ତା ମୁହଁକୁ ଜଳଜଳ କରି ଅନେଇଥାଏ । ମୋତେ ଗାଡିରେ ବସାଇ ସାରିଲାପରେ ମୁଁ ବୋଉକୁ କହିଥିଲି "ବୋଉ ତୁ ଗାଡି ଭିତରକୁ ଆସୁନୁ! ଏକଥା ଶୁଣି ସେ ଖୁବ୍ ଜୋର୍‌ରେ କାନ୍ଦିଲା । ବାପା ଦାଣ୍ଡ ପିଣ୍ଡାରେ ବସି କାନ୍ଦୁଥାନ୍ତି । ଗୋକୁଳି ଭାଇ ଗାଡି ପଛ ପଟେ ଠିଆହୋଇ ଭୋଭୋ ହୋଇ କାନ୍ଦୁଥାଏ । ଗାଡି ଆସି ରହିଲା ବଡ ବାପାଙ୍କ ଦାଣ୍ଡରେ । ବଡମା ଦୌଡି ଆସି ଜଗାବୋଲି କହି ଗାଡିରେ ମୁଣ୍ଡ ପିଟିଦେଲା । ବିଚ, ଦନେଇ, ନନ୍ଦ ଆଦି କାନ୍ଦି ବ୍ୟସ୍ତ ହେଉଥାନ୍ତି । ମୁଁ ତାକୁ ପ୍ରକାଶ କରିପାରୁ ନାହିଁ । ଗାଡି ଆସି ପହଞ୍ଚିଲା ସୁନ୍ଦରଗ୍ରାମରେ । ମୁଁ ବୋଉକୁ ମନେ ପକାଇ କାନ୍ଦୁଥାଏ । ମୋ ସାଥିରେ ପିର ଅପା ଆସିଥାଏ । ସେ ମୋତେ ବୋଉ ଆସିବ ବୋଲି କହି ବୁଝାଉଥାଏ ।

ଦିନେ ସୁନ୍ଦରଗ୍ରାମର ବଡ ବୋଉ ମୁରଲି ଭାଇ (୰ମୂରଲୀ ଧର କାନୁନ୍‌ଗୋ)ଙ୍କୁ ନେଇ ସୁନ୍ଦରଗ୍ରାମ ଘରକୁ ଆସିଲା । ମୂରଲୀ ଭାଇଙ୍କ ବୋଉ ମରିଯାଇଥିବାରୁ, ସେ ତାଙ୍କ ପିଉସୀ ଘରେ ରହି ସୁନ୍ଦରଗ୍ରାମରେ ପଢୁଥାଆନ୍ତି । ତାଙ୍କ ସହିତ ମୋତେ ସାଙ୍ଗ କରିଦେଲା "କାଳକ୍ରମେ ମୋ ସହିତ ଉପେନ୍ଦ୍ର, ରାଖାଲ, ଉମା ଭାଇ, ବିଶ୍ୱମ୍ଭର ଓ ବଳରାମ ଆଦି ସାଙ୍ଗ ହେଲେ । ସ୍ୱର୍ଗତ ଅପର୍ତ୍ତି ଜେନାଙ୍କ ଦାଣ୍ଡ ନିକଟରେ ଆମର ଖେଳ ଚାଲିଲା । ମୁଁ ଆସ୍ତେ ଆସ୍ତେ ସାଙ୍ଗ ମେଳରେ ରହି ନୂଆଗାଁ କଥା ଭୁଲିବାକୁ ଲାଗିଲି ।

ନୂଆଗାଁରୁ ମୋତେ ଭିକ ମାଗି ଆଣିଥିବାରୁ ମୋର ପିତୃ ଦତ୍ତନାମ ଜଗତାନନ୍ଦ ପରିବର୍ତ୍ତନ ହୋଇ ଭିକାରୀ ଚରଣ ହେଲା । ମୁଁ ସୁନ୍ଦର ଗ୍ରାମରେ ନି.ପ୍ରା ପାଠ ସାରି ଭିଙ୍ଗାର ପୁରରେ ୪ର୍ଥ ଶ୍ରେଣୀରେ ନାମଲେଖାଇଲି ।

## (ଙ)

ମୁଁ ସୁନ୍ଦର ଗ୍ରାମର ଯେଉଁ ଘରକୁ ପୋଷ୍ୟପୁତ୍ର ହୋଇ ଆସିଲି ସେ ଦିନେ ଅଂଚଳରେ ଘରୁଆ ଘରବୋଲି ପରିଚିତ ଥିଲା । ଓଭରସିୟର ଙ୍କ ଘର । ଯେଉଁ ଓଭରସିୟର ୰ରଘୁନାଥ ମହାନ୍ତି, ପୁରୁଣା, ମହାନଦୀ ଓ ବିରୁପା ବ୍ୟାରେଜର କାର୍ଯ୍ୟ ତଦାରଖ କରିଥିଲେ, ସେଥିଲେ ମୋର ସୁନ୍ଦରଗ୍ରାମ ବାପାଙ୍କ ଜନକ ।

ବ୍ରିଟିସ୍ ଇଂଜିନିୟରଙ୍କ ନିକଟରେ Orderly ଭାବେ ଚାକିରି ଆରମ୍ଭ କରି ନିଜ ଅଭିଜ୍ଞତାରୁ ଥରେ ଏକ ଜଟୀଳ ଡିଜାଇନର ସମାଧାନ କରିଥିଲେ । ଯାହାର ଉତ୍ତରରେ ତାଙ୍କୁ ଓଭସିଅରି ଭଳି ଦାୟୀତ୍ୱ ସମ୍ପର୍ଣ୍ଣ ପଦବୀ ମିଳିଥିଲା ।

ଚାକିରି ଜୀବନରେ ବହୁତ ପଇସା ରୋଜଗାର କରି ଅନେକ ଭୂସମ୍ପତ୍ତିର ମାଲିକ ହୋଇଥିଲେ । ଗାଁରେ underground କୋଠଘର ମଧରେ ପିତଳ ଗରାରେ ରୂପାଟଙ୍କା ରଖିଥିଲେ ।

କୌଣସି ଏକ ମକଦମାରେ ଜାମିନଦାର ଥାଇ ସମସ୍ତ ସମ୍ପତ୍ତି ଓ ଗଚ୍ଛିତ ଧନ ବ୍ୟାଜାପ୍ତ ହୋଇଥିଲା । ମୁଁ ଆସିପହଞ୍ଚିବା ବେଳକୁ କର୍ପୂର ଉଡିଯାଇ ପଡିରହିଥିଲା କନା ଖଣ୍ଡିକ ।

## (ଚ)

ଭିଙ୍ଗାରପୁର ମାଇନର ସ୍କୁଲରେ ସାଥି ଉପେନ୍ଦ୍ର, ରାଖାଲ, ଝରିଲୋର ଲିଙ୍ଗରାଜ ମହାପାତ୍ର, ନୃସିଂହ ମହାନ୍ତି, ଜେରା, ଆହୁରି ଅନେକଙ୍କ ସହିତ ଚାଲି ଚାଲି ଯାଇ ପାଠ ପଢୁଥିଲୁ । ବର୍ଷାଦିନେ ଆରମ୍ଭରେ ଆଉ ଚାଲି ଚାଲି ଯିବା ସମ୍ଭବପର ହେଲାନାହିଁ । ଆମେ ସମସ୍ତେ ଭିଙ୍ଗାପୁରରେ ଥିବା

ହଷ୍ଟେଲରେ ରହିବାର ବ୍ୟବସ୍ଥା ହେଲା । ବାପା, ଆଠଗଡରେ ଚାକିରି କରିଥିଲେ ସିନା, ହେଲେ ଘରକୁ କିଛି ଟଙ୍କା ଦେଉନଥିଲେ, ଫଳରେ ଅର୍ଥାଭାବରୁ ମତେ ଛାଡି ଏମନ୍ତେ ହଷ୍ଟେଲରେ ରହିଲେ । ମୁଁ "ଏକୁଟିଆ ଓଦାହୋଇ କାଦୁଅ ପାଣିରେ ଭିଙ୍ଗାରପୁର ଯାଇ ପାଠ ପଢିଲି । ମୋ କଷ୍ଟ ସହିନପାରି ବଡବୋଉ ତା' ଜିନିଷ ବନ୍ଧାପକାଇ ପଇସା ଦେଲା, ମୁଁ ତାକୁ ନେଇ ୨ ମାସ ହଷ୍ଟେଲରେ ରହିଲି । ଜଳଖିଆ କ'ଣ ଖାଇବି । ସେ ଚିନ୍ତାରେ ଘରୁ ଚାଉଳଭଜା ଚୂନା କରି ନେଇଥାଏ ପ୍ରତ୍ୟେକ ଦିନ ଲୁଣ ପକାଇ ସେଥିରୁ ମୁଠାଏ ଖାଇଦିଏ ।

ଗହ୍ମା ପୂର୍ଣ୍ଣିମାରେ ରାଖାଲକୁ ଜ୍ୱର ହୋଇଥିବାରୁ ସେ ହଷ୍ଟେଲରେ ରହିଲା । ଉପେନ୍ଦ୍ର ଓ ମୁଁ ଦୁହେଁ ଗାଁକୁ ଆସିଲୁ । ହଠାତ୍ ଖଣ୍ଡେଇତା ଘାଇ ଭାଙ୍ଗି ପାଣି ମାଡିଆସିଲା ଚାହୁଁ ଚାହୁଁ ଗାଁ ଦାଣ୍ଡରେ ଆଣ୍ଠିଏ ପାଣି ହୋଇଗଲା । ଆମ ଗାଁର ସବୁ ଲୋକ ଗାଈ, ବାଛୁରୀ ସହ ସତୀ ପଡିଆ କୁଦରେ ଆଶ୍ରୟ ନେଲେ ମହାଦେବଙ୍କ ମନ୍ଦିର ନିକଟରେ ଥିବା ଡାକଘରକୁ ପାଣିପେଲି ନେଇ ଦିଅଁଙ୍କ ଗାଡିଆରେ ପକାଇଦେଲା ।

ସତୀ ପଡିଆ କୁଦରେ ଥିବା ସମୟରେ ସ୍ୱର୍ଗତ ମୂରଲୀଧର କାନୁନ୍‌ଗୋ ସେଠାକୁ ରିଲିଫ୍ ଆଣି ଆସି ପହଞ୍ଚିଲେ । ସେ ସେତେବେଳେ ପାଠ ପଢା ଛାଡି କଂଗ୍ରେସରେ ଯୋଗ ଦେଇଥିଲେ । ସତୀ ପଡିଆ କୁଦରେ ଆମ ମାନଙ୍କୁ ଧରି ସକାଳ ସଂଧ୍ୟାରେ ପ୍ରାର୍ଥନା କରନ୍ତି । ଦିନ ଯାକ ରିଲିଫ୍ କାର୍ଯ୍ୟରେ ବ୍ୟସ୍ତ ରୁହନ୍ତି । ପାଣି ଛାଡିବାରୁ ସମସ୍ତେ ଘରକୁ ଫେରିଲୁ । ମୂରଲୀ ବାବୁ ରିଲିଫ ଚାଉଳ ଗାଁରେ ବଣ୍ଟାଯିବାର ବ୍ୟବସ୍ଥା କଲେ । ଛଟର ଚାଉଳ କହି ଅନେକ ଗ୍ରହଣ କଲେ ନାହିଁ । ମୁଁ ସେଥିରୁ ଚାଉଳ ଆଣି ଘରେ ରଖିଲି । ତାକୁ ନେଇ ଭିଙ୍ଗାରପୁର ହଷ୍ଟେଲରେ ଦେଇ ଚାରିପାଞ୍ଚ ମାସ ପର୍ଯ୍ୟନ୍ତ ହଷ୍ଟେଲରେ ରହିଲି । ତା'ପରେ ଅର୍ଥାଭାବରୁ ହଷ୍ଟେଲ ଛାଡିବାକୁ ବାଧ୍ୟ ହେଲି ।

ହଷ୍ଟେଲରେ ଥିବା ସମୟରେ ଆମେ ରାତିରେ ପାଠ ପଢିବା ପାଇଁ ଲଣ୍ଠନରେତେଲ ପକାଇବାକୁ ପାଳି କରିଥାଉ । ମୋର ସେ ଦିନ ପାଳିଥାଏ

ମୁଁ ଲଣ୍ଠନ ଧରି ତେଲ ପକାଇବାକୁ ଆସିଲି, କିନ୍ତୁ ମୋ ପାଖରେ ପଇସା ନଥିବାରୁ, ସମସ୍ତଙ୍କ ଅଗୋଚରରେ ସ୍କୁଲ ପାଖ ଗାଡିଆରୁ ପାଣି ପୂରାଇ ଲଣ୍ଠନକୁ ରଖି ଦେଲି । ପାଠ ପଢିବା ବେଳେ ଲଣ୍ଠନ ଜଳିଲା ନାହିଁ । ଅନ୍ୟ ପିଲାମାନେ ମୋ ସାଙ୍ଗ କଳିକଲେ । ବନ୍ଧୁ ଉପେନ୍ଦ୍ର ସେଠାରେ କହିଲା, ଭିକାରୀର ଯେଉଁଦିନ ପାଳିହେବ ସେଦିନ ଲଣ୍ଠନ ମୋତେଦେବୁ । ମୁଁ ହଷ୍ଟେଲରେ ଥିବା ପର୍ଯ୍ୟନ୍ତ ମୋ ପାଳିଦିନ ଉପେନ୍ଦ୍ର ଲଣ୍ଠନରେ ତେଲ ପକାଏ । ପ୍ରକୃତରେ ସେ ମୋର ବିପଦର ବନ୍ଧୁ ।

ଟେଷ୍ଟ ପରୀକ୍ଷା ହେଲା, ମୁଁ କୃତକାର୍ଯ୍ୟ ହେଲି । ପୁରୀ ଜିଲ୍ଲା ସ୍କୁଲ ସେଣ୍ଟର । ୨୦ଟଙ୍କା ଦେଲେ ପୁରୀକୁ ଯାଇ ପରୀକ୍ଷା ଦେବାକୁ ହେବ । ୨୦ଟଙ୍କା ନଥିଲା! ମୋ ପଢା ସେଇଠି ରହିଲା । ମୁଁ ଘରକୁ ଆସିଲି, ଗୋବିନ୍ଦକୁ ପାଠପଢାଇ ମାସକୁ ୨ଟଙ୍କା ଆଣି ବଡ ବୋଉକୁ ଦେଲି କାରଣ ସେତେବେଳେ ବଡ ବାପା ୰ ବ୍ରଜବିହାରୀ ମହାନ୍ତି ଶଯ୍ୟାଶାୟୀ ହୋଇ ମୃତ୍ୟୁ ସହ ସଂଗ୍ରାମ କରୁଥାନ୍ତି ।

## (ଛ)

ମୃତ୍ୟୁ ଶଯ୍ୟାରେ ସଂଗ୍ରାମ କରୁଥିବା ସମୟରେ ବଡ ବାପା ଡାକି କହିଲେ ଭିକରେ ତୁ ମୋର ବହୁତ ସେବା କରୁଛୁ । ମୁଁ ସିନା ତୋର ବାପା କିନ୍ତୁ ପ୍ରକୃତରେ ତୁ ମୋର ବାପା । ମୋରି କୋଳରେ ତାଙ୍କରି ଜୀବନ ଗଲା । ବାପା (ସଦାନନ୍ଦ ମହାନ୍ତି) ଆଠଗଡରୁ ଆସି ତାଙ୍କର ଶୁଦ୍ଧିକ୍ରିୟା କଲେ । ଘରେ ବୋଉ ବଡ ବୋଉଙ୍କ ସହ କଥା ହୋଇ ବୋଉ (ମାଗୁଣୀ) ଏବଂ ମତେ ନେଇ ଆଠଗଡ ଗଲେ । ଆଠଗଡ ବିଏନ୍ ବିଦ୍ୟାପୀଠରେ ମୋର ନାମ ଲେଖା ହେଲା ।

ଆଠଗଡରେ ରହିବା ଭିତରେ ପାଣିର ଅଭାବ ଥିବାରୁ ମତେ ମାଠିଆରେ ଦୂରରୁ ପାଣି ଆଣି ଘରେ ଦେବାକୁ ହୁଏ । ଘରର ଅନ୍ୟ ସମସ୍ତ କାର୍ଯ୍ୟ ଦୋକାନ ସଉଦାଠୁ ଆରମ୍ଭ କରି ହାଟ ପର୍ଯ୍ୟନ୍ତ ସବୁ କଥା ମୋତେ

ବୁଝିବାକୁ ପଡେ । ବାପାଙ୍କର ଶାସନ ଅତ୍ୟନ୍ତ କଡା । ରାଜାଙ୍କ ନିକଟରେ ଚାକିରୀ କରି ସେ ରାଜକୀୟ ଢାଞ୍ଚାରେ ଘରର ଶାସନ କରନ୍ତି । ବାଲ୍‌ଟି ନଥିବାରୁ ମାଠିଆରେ ପାଣି ଆଣିବାକୁ ପଡେ । ଅନେକ ଥର ମାଠିଆ ଭାଙ୍ଗିଛି । ସେଥିପାଇଁ ମୋତେ ବାପା କଠିନ ଦଣ୍ଡ ଦେଇଛନ୍ତି । ଫୁଟବଲ୍ ଖେଳିବାକୁ ଯାଉଥିଲି, ମୋତେ ସେଥିରୁ ନିବୃତ୍ତ କରାଇଲେ । କହିଲେ ଖେଳ କ'ଣ ପଇସା ଦେବ । ସ୍କାଉଟ୍‌ରେ ଯୋଗଦେଇ ଘରକୁ ଡେରିରେ ଆସିବାରୁ ତାକୁ ମଧ୍ୟ ବନ୍ଦ କରିଦେଲେ ।

ଆମ ବିଦ୍ୟାଳୟରେ ଡ୍ରାମା ହେବାର ସ୍ଥିରହେଲା । ମୋତେ ଅଭିନୟ କରିବାକୁ ସୁଯୋଗ ମିଳିଲା । B.N. High School, Athgarh ରେ ସଙ୍ଗୀତ ଶିକ୍ଷକ ଥାଆନ୍ତି ସ୍ୱର୍ଗତ ବାଣୀକଣ୍ଠ ନିମାଇଁ ହରିଚନ୍ଦନ ।

ଅଭ୍ୟାସ ହେଉଥିବା ସମୟରେ ମୋର ଅଭିନୟ ଦେଖି ସେ ଭାରି ଖୁସିହେଲେ । ସମୟ କ୍ରମେ ଏ କଥା ବାପାଙ୍କ କାନକୁ ଗଲା । ସେ ମୋତେ ଡାକି କହିଲେ ଅତି ବେହିଆ, ନାଚିଆ ଯାଏ । ତୋର ଡ୍ରାମାରେ ଅଂଶ ଗ୍ରହଣ କରିବା ଦରକାର ନାହିଁ ।

ମୋର ଅନୁପସ୍ଥିତି ଦେଖି ସ୍ୱର୍ଗତ ନିମାଇଁ ହରିଚନ୍ଦନ ବାପାଙ୍କୁ ତାଙ୍କ କାର୍ଯ୍ୟାଳୟରେ ଦେଖି ପଚାରିଲେ ନାଟକରେ ଅଭିନୟ କରିଲେ ପିଲା କ'ଣ ଖରାପ ହୋଇଯାଆନ୍ତି । ରାଜା ଏକଥା ଶୁଣିଲେ ବିରକ୍ତ ହେବେ । ବାପା ରାଜାଙ୍କ ଭୟରେମୋତେ ଘରେ କହିଲେ ଯାଆ ଏଥର ନାଚେ ।

ନାଟକ ମଞ୍ଚସ୍ଥ ହେଲା । ମୋ ଅଭିନୟକୁ ରାଜା, ରାଜ ପରିବାର, ଦର୍ଶକ ମଣ୍ଡଳୀ ପ୍ରଶଂସା କଲେ । ଏବଂ ମୋତେ ପୁରସ୍କୃତ କଲେ ।

ବିଦ୍ୟାଳୟରେ ପ୍ରତ୍ୟେକ ଶନିବାର ଦିନ ତର୍କସଭା ହୁଏ । ମୁଁ ସେଥିରେ ଭାଗ ନିଏ । ମୂରଲୀ ବାବୁ ଓ କଂଗ୍ରେସ ଲୋକଙ୍କର ପ୍ରଭାବରେ ମୁଁ ଅନେକ ସମୟରେ ତର୍କ ସଭାରେ ଦେଶ, ମାତୃଭୂମି, ବିଷୟରେ ଭାଷଣ ଛଳରେ କହି ଦେଇଥାଏ ।

ଥରେ ଆମ ବିଦ୍ୟାଳୟର ସ୍ୱର୍ଗତ କାଶୀ ପଣ୍ଡିତେ ମୋତେ ତର୍କସଭା ପରେ ଡାକି ଏକାନ୍ତରେ କହିଲେ ତମେ ଏଭଳି ଆଉ କୁହନାହିଁ , ରାଜା ତମକୁ ଜେଲରେ ଠୁଙ୍କିଦେବେ ।

ମୂରଲୀ ବାବୁଙ୍କ ପ୍ରଭାବରେ ଘରେ ତାକୁଡି ରଖି ସୂତା କାଟୁଥିଲି । ଖଦଡ ଲୁଗା ପିନ୍ଧୁଥିଲି । ବାପା ଥରେ ଏ ତାକୁଡି, ଖଦଡ ଲୁଗା ଓ କଟା ହୋଇଥିବା ସୂତାକୁ ନିଆଁ ଲଗେଇ ପୋଡିଦେଲେ । ମୋ ମନରେ ବହୁତ ଆଘାତ ଆସିଲା । ତେଣୁ ଆଠଗଡ ଛାଡି ଦେବା ପାଇଁ ଚିନ୍ତାକଲି ।

ଆଠଗଡରେ ଲିଙ୍ଗରାଜ ବାବୁ ନାମକ ଜଣେ ଖଦଡି ଥାଆନ୍ତି । ମୁଁ ସମୟ ପାଇଲେ ତାଙ୍କ ସଙ୍ଗେ ଦେଖାକରେ ଉପର ବର୍ଣ୍ଣିତ ସମସ୍ତ ବିଷୟ ତାଙ୍କ ଆଗରେ କହିଲି । ତାଙ୍କ ଠାରୁ ଦୁଇଟଙ୍କା ଆଣି ରାଜଆଠଗଡରୁ ଟ୍ରେନ ଯୋଗେ ଗାଁକୁ ପଳାଇ ଆସିଲି । ମୁରଲୀ ବାବୁଙ୍କ ସଂଗେ ମିଶି ଆମ ଅଂଚଳରେ କଂଗ୍ରେସର ବିଭିନ୍ନ କାର୍ଯ୍ୟକ୍ରମରେ ଯୋଗଦେଲି ।

ଗୋବିନ୍ଦପୁରଥାନା ପୋଡିବା ପାଇଁ ସ୍ଥିର କଲୁ । ମୂରଲିବାବୁଙ୍କ ସାଥିରେ ବାନରସେନା ହୋଇ ମୁଁ ପାଟ୍‌ସୁନ୍ଦରପୁର ବଳରାମ ଚୌଧୁରୀ, ବ୍ରାହ୍ମଣ ସାଇଲୋ ବିଭୁତି ଆଚାର୍ଯ୍ୟ, ଝାରପଡାର ସର୍ବାଣୀ ସେନଗୁପ୍ତ ପ୍ରଭୃତି ଅନେକ ଥାଉ । ଗୋବିନ୍ଦପୁରରେ ପହଞ୍ଚିଲାବେଳକୁ ଅନେକ ଲୋକ ଆମ ସହିତ ଯୋଗଦେଲେ । ଗୋବିନ୍ଦପୁରରୁ କବିରାଜ ସ୍ୱର୍ଗତ ବାଉରୀ ବନ୍ଧୁ ପଣ୍ଡା ଅନ୍ତରାଳରେ ରହି ଆନ୍ଦୋଳନକୁ ସହାୟତା ଦେଉଥାନ୍ତି ।

ମୂରଲିବାବୁଙ୍କୁ ପୋଲିସ୍ ଆରେଷ୍ଟ୍ କଲା । ଜନତା ଛତ୍ରଭଙ୍ଗ ଦେଲେ । ବିଭୂତି ଆଚାର୍ଯ୍ୟ ପ୍ରଭୃତିଙ୍କୁ ପୋଲିସ୍ ଗୋଡେଇଲା । ମୁଁ ବନ୍ଧ ତଳକୁ ଆସି ଡଙ୍ଗା ଭିତରେ ଶୋଇଗଲି । ରାତିରେ ଡଙ୍ଗାରୁ ବାହାରି ନୂଆଗାଁ ଗଲି ଓ ତାର ପରଦିନ ବିଲ, ପାଟଦେଇ ସୁନ୍ଦରଗାଁ ଫେରିଲି ।

ମୋର ଅଭାବ ସଂସାର । ଘରେ ଖାଇବାକୁ ନ ଥାଏ । ଗୋବିନ୍ଦ, ଉପ, ଯୁଧିଷ୍ଠିର ଆଦିଙ୍କୁ ପଢାଇ ମାସକୁ ପାଞ୍ଚଟଙ୍କା ପାଏ । ଘରୁ କାଗେଜି, କମଳା

ନେଇ ଈଶ୍ୱର ପୁରରେବିକ୍ରି କରି ଘର ଚଳାଏ ।

ପୂର୍ବରୁ କହିଛି ବାପା ସିନା ଆଠଗଡ ରାଜାଙ୍କ ନିକଟରେ ସର୍ଭେୟର ଥାନ୍ତି, କିନ୍ତୁ; ପାଉଥିବା ଦରମା ଆଠଗଡରେ ବିଭିନ୍ନ ପ୍ରକାର ଦାନଧର୍ମ କରି ଖର୍ଚ୍ଚ କରିଦିଅନ୍ତି । ପରିଣାମ ସ୍ୱରୂପ ଗାଁରେ ରହୁଥିବା ବଡବୋଉ, ସାନବୋଉ, ଭାଉଜ ପ୍ରଭୃତି ବହୁତ ହଇରାଣ ହୁଅନ୍ତି । ତେଣୁ ପିଲାଟି ବେଳୁ ଘର ଚଳାଇବାର ଚିନ୍ତା ମୋ ମୁଣ୍ଡରେ ପଶିଥିଲା ।

ନୂଆଗାଁ (ମୋର ଜନ୍ମସ୍ଥାନ) ରୁ ମୋ ବାପା ଓ ଭାଇ ମୋର ଏପରି ଅବସ୍ଥାରେ ସାହାଯ୍ୟ କରିବାକୁ ଇଚ୍ଛା କରିଥିଲେ ମଧ୍ୟ ମୋର ସୁନ୍ଦର ଗ୍ରାମର ବାପା (୰ସଦାନନ୍ଦ ମହାନ୍ତି) ଙ୍କ ଡରରେ ସେଥିରୁ ବଞ୍ଚିତ ହେଉଥିଲେ ।

## (ଜ)

ଆଠଗଡରୁ ପାଠପଢା ସାରି ଫେରିଲା ପରେ ଘରେ ଥାଏ । ସୁଯୋଗ ଭଣ୍ଡି କଂଗ୍ରେସ ଆନ୍ଦୋଳନରେ ଯୋଗ ଦିଏ । କଟକ ମେଡିକାଲ୍ ସ୍କୁଲରେ କମ୍ପାଉଣ୍ଡର ପାଠ ପଢିବା ପାଇ ଦରଖାସ୍ତ କରିଥିଲି ଓ ସେଥିରେ ସିଲେକ୍ଟ ହୋଇଥିଲି । କିନ୍ତୁ, କଟକରେ କେଉଁଠି ରହିପାଠ ପଢିବି ସେ ଚିନ୍ତା ମତେ ଘାରୁଥାଏ । ବନ୍ଧୁ ଉପେନ୍ଦ୍ରର ବାପା କଟକ ମାଲ୍‌ଗୋଦାମରେ ଚାକିରି କରିଥାନ୍ତି । ଉପେନ୍ଦ୍ର ତାଙ୍କ ନିକଟରେ ରହୁଥାଏ ଏବଂ ଉପେନ୍ଦ୍ରର ଦାଦା ମଧ୍ୟ ସେଇ ମାଲଗୋଦାମରେ ଚାକିରି କରୁଥାନ୍ତି । ସେ ତାଙ୍କ ପରିବାର ସହିତ କଟକରେ ରହୁଥାନ୍ତି । ଉପେନ୍ଦ୍ର ଓ ତାଙ୍କ ବାପାଙ୍କ ପ୍ରରୋଚନାରେ ମୋର ସେଠାରେ ରହିବାର ବନ୍ଦୋବସ୍ତ ହେଲା । ମୁଁ ତା ଦାଦାଙ୍କ ଘରେ ରହି ତାଙ୍କର ଛୋଟ ପିଲା ମାନଙ୍କୁ ପାଠ ପଢାଇବି ଓ ଦୁଇ ବେଳା ଖାଇବି ।

କଟକ ମେଡିକାଲ୍ ସ୍କୁଲ୍‌ରେ ନାମ ଲେଖାଇଲି । କଟକରେ ମୋର ପାଠ ପଢିବା ଏବଂ ପାଠ ପଢାଇବା ଆରମ୍ଭ ହେଲା । ଘରର ଅବସ୍ଥାକୁ ଦୃଷ୍ଟିରେ ରଖି କେମିତି ଶୀଘ୍ର ରୋଜଗାର କରିବି ମୁଁ ସେଥିପାଇଁ ସର୍ବଦା ଚେଷ୍ଟିତ ଥାଏ । ମେଡିକାଲ୍ ସ୍କୁଲ୍‌ରେ ଦୁଇବର୍ଷ ପଢିବାକୁ ହେବ ଏବଂ ସେଇ

ଦୁଇବର୍ଷ ଭିତରେ ମୋର ପରିବାର ଅବସ୍ଥା କ'ଣ ହେବ ସେ ଚିନ୍ତାରେ ମୁଁ ବ୍ୟତିବ୍ୟସ୍ତ ହେଲି ।

ଏହି ସମୟରେ Royal Military ପାଇଁ ଅନେକ E.M.E. ଚାକିରି ଦରକାର ହେଲା । ସେଥିନିମିତ୍ତ ଇଣ୍ଟରଭ୍ୟୁ ହେଲା ଓ ମୁଁ ସିଲେକ୍ଟ ହେଲି । E.M.E. ଟ୍ରେନିଙ୍ଗର ସମୟ ଥିଲା ଏକ ବର୍ଷ ଛ ମାସ ତେଣୁ କମ୍ପାଉଣ୍ଡରି ନ ପଢି ଛ'ମାସ ପୂର୍ବରୁ ଘରକୁ ଚଳାଇବା ଉଦ୍ଦେଶ୍ୟରେ Cuttack Engineering school ରେ ଯୋଗଦେଲି ।

ସେ ସମୟରେ Engineering School ରେ Principal ଜଣେ ସାହେବ ଥାନ୍ତି । କୌଣସି ସୂତ୍ରରୁ ସେ ଜାଣିବାକୁ ପାଇଲେ ମୋର ଦୁଇଟି ଅନୁଷ୍ଠାନରେ ନାମ ଅଛି । ଦିନେ work shop ରେ କାମ କରୁଥିଲାବେଳେ Principal ଙ୍କ ଡକରା ପାଇ ତାଙ୍କ Chamber ରେ ଦେଖାକଲି । ସେ ମତେ ମୋର ଦୁଇଟି ଯାକ ଜାଗାରେ ନାମ ଥିବାର ସତ୍ୟତା ବିଷୟରେ ପଚାରିଲେ । ମୁଁ ସ୍ପଷ୍ଟଭାବେ ଉତ୍ତର ଦେଇଥିଲି ଆଜ୍ଞା ମୁଁ Engineering School ରେ ନାମ ଲେଖାଇବା ପୂର୍ବରୁ Medical School ରେ ନାମ ଲେଖାଇଥିଲି । ଅନ୍ୟ ଅନୁଷ୍ଠାନରେ ନାମ ଲେଖାଇଲେ ପୂର୍ବ ଅନୁଷ୍ଠାନରେ ଲେଖାଯାଇଥିବା ନାମକୁ କଟେଇବାକୁ ପଡେ ବୋଲି ମତେ ଜଣାନାହିଁ । ମୁଁ ଅନୁଭବ କଲି ମୋର ଉତ୍ତର ସାହେବ Principal ମହୋଦୟଙ୍କ ହୃଦ୍‌ବୋଧ ହେଲା । ସେ ମତେ ଶ୍ରେଣୀକୁ ଯିବାକୁ କହି ତାଙ୍କ ଦପ୍ତରରୁ ଚିଠି ଲେଖି ମେଡିକାଲ୍ ସ୍କୁଲରୁ ମୋର ନାମ କାଟିଦେବାର ବ୍ୟବସ୍ଥାକଲେ ।

Engineering school ର ପାଠପଢା ସକାଳ ୬.୩୦ରୁ ଆରମ୍ଭ ହୁଏ । ମୁଁ ମାଲଗୋଦାମରେ ରହୁ ଥିବାରୁ ମୋତେ ପାଦରେ ଚାଲିକରି school କୁ ଯିବାକୁ ପଡୁଥାଏ । ଏତେ ସକାଳୁ ବା କଣ ଖାଇକରି ଯିବି । ମୁଁତ ଜଣଙ୍କ ଘରେ ଆଶ୍ରୟ ନେଇଛି । ତେଣୁ ପ୍ରତ୍ୟେକ ଦିନ ବାସି ପଖାଳ ଖାଇ ସ୍କୁଲକୁ ଯିବାକୁ ବାଧହୁଏ ।

ପ୍ରତ୍ୟେକ ଦିନର ବାସି ପଖାଳ ଖିଆ, ମାଲ୍ ଗୋଦାମର ଅସ୍ୱାସ୍ଥ୍ୟକର ପରିବେଶ ମଧ୍ୟରେ ମୁଁ ବାତଜ୍ୱରରେ ପୀଡ଼ିତ ହେଲି । ପ୍ରତ୍ୟେକ ସପ୍ତାହରେ ବାତଜ୍ୱର ଭୋଗି ମୁଁ ସପ୍ତାହକ ୬ ଦିନରୁ ୩ ଦିନ ପାଠପଢ଼ା ବନ୍ଦ କରେ ।

ରୋଗାକ୍ରାନ୍ତ ଅବସ୍ଥାରେ ମୋର ଘରକୁ ଆସିବାର ମନେ ଥିଲେ ବି ଆଶ୍ରୟ ଦାତା କାଳେ ଖରାପ ଭାବିବେ, ସେଥିପାଇଁ ଆସିପାରେନି । ଯେଉଁଦିନ ମତେ ଆଶ୍ରୟ ଦାତା ତାଙ୍କ କାମପାଇଁ ଗ୍ରାମକୁ ପଠାନ୍ତି, ସେଦିନ ଆସିଥାଏ ।

ଯେଉଁଦିନ ଗାଁକୁ ଆସେ, ରାତି ନ ପାହିବା ପୂର୍ବରୁ କଟକ ଛାଡେ । ଚାଲିଚାଲି କରି ନଖରାରେ ପହଞ୍ଚିଲା ବେଳକୁ ରାତିପାହିଯାଏ । ନଖରା ଗଣ୍ଡରେ ନିତ୍ୟକର୍ମ ସାରି କିଛି ବାଟ ଚାଲିଲାପରେ ଆଜି କାଲିକା ତ୍ରିନାଥ ବଜାର ଏବଂ କଲ୍ୟାଣୀର ମଧ୍ୟ ସ୍ଥଳରେ ଏକ ବଡ ବରଗଛ ପଡେ । ତା' ନିକଟରେ ଏକ ପୋଖରୀ । ଗଛମୂଳେ ଜଣେ ବୁଢ଼ା ମୂଆଁ ପିଠା (ଭୋଗେଇ) ଏବଂ ଗୋଟିଏ ମୁଢ଼ି ଅଖାଧରି ବସିଥାନ୍ତି । ଆଶ୍ରୟ ଦାତା ଦେଇଥିବା ସ୍ୱଳ୍ପ ପଇସାରେ ୨ଟି ମୁଆଁ ପିଠା ହୁଏ । ତଥାପି ଚାଲି ଚାଲି ଆସିଥିବା କ୍ଳାନ୍ତି ପାଇଁ ଭୋକମରେ ନାହିଁ । ବୁଢ଼ା ମନ କଥା ବୁଝିଲା ପରି ଆଉ ଯୋଡିଏ ପିଠା ଓ ଅଣ୍ଟିରେ ସେରେ ମୁଢ଼ି ଢାଳିଦେଇ କୁହନ୍ତି , ତୋ ପାଖେ ଯଦି ପଇସା ନାହିଁ ଘରୁ ଫେରିଲାବେଳୁ ମତେ ଦେଇଦେବୁ । ଯଦି ମୁଁ ନଥିବି ଏଇ ଗଛ ଖୋଲରେ ରଖି ଦେଲେ ମୁଁ ପାଇଯିବି ।

ଏକଥା ଆଜିର ସମାଜ ବିଶ୍ୱାସ କରି ପାରିବନାହିଁ । ସେ ସମୟରେ ସତ୍ ଏବଂ ବିଶ୍ୱାସକୁ ନେଇ ସଂସାର ଚାଲୁଥିଲା ।

## (୯)

ପିଲାଟି ଦିନରୁ ଛୋଟ ପିଲାମାନଙ୍କୁ ପାଠ ପଢାଇବାର ଅଭ୍ୟାସ ଥିଲା । ଆମ ଗାଁର ପୂଜ୍ୟ ସ୍ୱର୍ଗତ ଲୋକନାଥ ଭାଇ ଜିଲ୍ଲା ବୋର୍ଡର ହେଡକ୍ଲର୍କ, ଏବଂ ପୂଜ୍ୟ ସ୍ୱର୍ଗତ ଦୁଃଖିଶ୍ୟାମ ଭାଇନା ମୁନିସ୍‌ପାଲଟିର ଓଭରସିଅର ଥାଆନ୍ତି । ସେ ଦୁଇ ଜଣଙ୍କ ପ୍ରଚେଷ୍ଟାରେ ଆମ ଗାଁରେ ମାଇନର ସ୍କୁଲ ଖୋଲିଥିଲା ।

ସେମାନେ ଆମ ଘରର ଅବସ୍ଥା ତଥା ମୋର ବୟସ ଓ ଶିକ୍ଷାଦାନକୁ ଦେଖି ମୋତେ ବିଦ୍ୟାଳୟରେ ଶିକ୍ଷକତା କରିବାର ସୁଯୋଗ ଦେଲେ । ତତ୍ ସଂଗେ ସଂଗେ ମୋତେ ବିଦ୍ୟାଳୟ ମ୍ୟାନେଜିଂ କମିଟିର ସଂପାଦକଙ୍କ ବ୍ୟକ୍ତିଗତ ସହାୟକ ଭାବେ କାର୍ଯ୍ୟ କରିବାକୁ ପଡିଲା ।

ଏସବୁ ଦାୟିତ୍ୱ ସହିତ ମଧ୍ୟ ମୋତେ ହଷ୍ଟେଲ ଦାୟିତ୍ୱ ଦିଆଯାଇଥିଲା । ସେ ସମୟରେ ବହୁତ ଭଲ ଭଲ ହେଡମାଷ୍ଟରଙ୍କ ସାନ୍ନିଧ୍ୟ ଲାଭ କରି ଅନେକ କଥା ଶିଖିଲି ।

ଆମ ସ୍କୁଲକୁ ପରେ ପରେ ବନ୍ଧୁ ବଳରାମ, ଶ୍ରଦ୍ଧେୟ ଧଡିଭାଇନା (ଗଦାଧର ନନ୍ଦ) ଶିକ୍ଷକତା କରିବାକୁ ଆସିଲେ । ମୁଁ ସ୍ୱର୍ଗତ ହରିବାକୁ (ତ୍ରିପାଠୀ) ସ୍ୱର୍ଗତ ଦିନବନ୍ଧୁ ବାବୁ, Primary ର ପାଠପଢା କଥା ବୁଝିଲା ବେଳେ ସ୍ୱର୍ଗତ ସତ୍ୟବାଦୀ ଓତା, ଧଡିଭାଇନା, ବଳରାମ ମାଇନର ସ୍କୁଲର ପାଠପଢା କଥା ବୁଝୁଥିଲେ । ସ୍ୱର୍ଗତ କବି ପ୍ରସାଦ ମହାପାତ୍ର ଆମ ବିଦ୍ୟାଳୟକୁ ହେଡମାଷ୍ଟର ହୋଇ ଆସିଲେ । ସେ ଜ୍ଞାନୀ, ଉତ୍ତମ ଶିକ୍ଷକ, ଏବଂ କବି ଥିଲେ । ଏହି ସବୁ ଭଲ ଗୁଣ ସହିତ ଚର୍ଚ୍ଚିଲଙ୍କ ପରି ଥିଲେ କୂଟନୀତିଜ୍ଞ । ଦକ୍ଷ ପ୍ରଶାସକ ହେବା ନିମନ୍ତେ ସେ ସର୍ବଦା ଇଂରେଜ ସରକାରଙ୍କ ପରି Divide & Rule ପଲିସି ପ୍ରୟୋଗ କରି କାମ କରୁଥିଲେ । ସେ ଅତ୍ୟନ୍ତ ଜିଦ୍ ଖୋର ଥିବାରୁ ଏକଦା ତାଙ୍କର ଇସ୍ତଫା ପତ୍ର କର୍ତ୍ତୃପକ୍ଷଙ୍କୁ ଦେଇଥିଲେ ।

ପ୍ରାୟ ଅଧିକାଂଶ ଶିକ୍ଷକ ଆମ ଗାଁର ଲୋକ ହୋଇଥିବାରୁ ବିଦ୍ୟାଳୟର ଉନ୍ନତି ନିମନ୍ତେ ସାମୂହିକ ଭାବେ କାର୍ଯ୍ୟ କରୁଥିଲୁ । ଶିକ୍ଷାଦାନର ମାନ ଉନ୍ନତ ଥିବାରୁ ପ୍ରତ୍ୟେକ ବର୍ଷ ସୁନ୍ଦର ଗ୍ରାମ ବିଦ୍ୟାଳୟର ଅନେକ ଛାତ୍ର ପ୍ରାଥମିକ ବା ମଧ୍ୟ ଇଂରାଜୀ ମେଧା ବୃତ୍ତି ପାଉଥିଲେ । ତେଣୁ ବିଦ୍ୟାଳୟର ଛାତ୍ର ସଂଖ୍ୟା କ୍ରମେ ବୃଦ୍ଧି ପାଇଲା ଏବଂ ବହୁ ଦୂର ଦୂରନ୍ତାରରୁ ଛାତ୍ରମାନେ ଆସି ସୁନ୍ଦର ଗ୍ରାମ ବିଦ୍ୟାଳୟରେ ପାଠ ପଢିଲେ ।

ବିଦ୍ୟାଳୟର ଶିକ୍ଷା ଏବଂ ସାଂଗଠନିକ କାର୍ଯ୍ୟ ବିଦ୍ୟାଳୟକୁ ଅନେକ ପ୍ରଶଂସା ଆଣିଦେଇଥିଲା ।

## (ଛ)

ମୁଁ ସୁନ୍ଦରଗ୍ରାମ ମାଇନର ସ୍କୁଲରେ ଶିକ୍ଷକତା କରୁଥିବା ବେଳେ ବାଲ୍ୟବନ୍ଧୁ ସ୍ୱର୍ଗତ ଦାମୋଦର ପଣ୍ଡା ଧମିଲୋ ସ୍ୱର୍ଗତ ଜନାର୍ଦ୍ଦନ ମହାନ୍ତିଙ୍କ ଠାକୁର ପୂଜକ ଥାନ୍ତି । ଜମିଦାରଙ୍କ ମନ୍ଦିର, ଠାକୁରଙ୍କର ଅଚଳାଚଳ ସଂପତ୍ତି । ଠାକୁର ମନ୍ଦିରର ନୀତି, ଖଞ୍ଜା ବହୁତ ଥାଏ । ସ୍ୱର୍ଗତ ଜନାର୍ଦ୍ଦନ ମହାନ୍ତିଙ୍କ ପରିବାରର ଜଣେ ଠାକୁରଙ୍କ ଦାୟୀତ୍ୱ ନେଇ ସମସ୍ତକାର୍ଯ୍ୟ ବୁଝାସୁଝା କରନ୍ତି ।

ସ୍ୱର୍ଗତ ଜଗବନ୍ଧୁ ମହାନ୍ତି (ଜନାର୍ଦ୍ଦନ ମହାନ୍ତିଙ୍କ ବଡନାତି) ସେତେବେଳେ ଠାକୁର ମନ୍ଦିର କାର୍ଯ୍ୟ ବୁଝାସୁଝା କରୁଥାନ୍ତି । ଆମ ଗ୍ରାମର ସ୍ୱର୍ଗତ ବନଭାଇଙ୍କ ଶ୍ୱଶୁର ଘର ଧମିଲୋ । ସେ ଜଗବନ୍ଧୁ ମହାନ୍ତିଙ୍କୁ ତାଙ୍କ ଝିଅର ବିବାହ ପାଇଁ ମୋ ନାମକୁ ପ୍ରସ୍ତାବ ଦେଲେ । ବନ୍ଧୁ ଦାମୋଦର ପଣ୍ଡା ଏ ପ୍ରସ୍ତାବକୁ ଆଗେଇ ନେଇଥିଲେ ।

ଆମ ଗାଁରେ ପ୍ରତିବର୍ଷ ରଜକୁ ନାଟକ ମଞ୍ଚସ୍ଥ ହେଉଥିଲା । ଆମ ଗ୍ରାମରେ କଳାକାର, ସଂଗୀତଜ୍ଞ, ନିର୍ଦ୍ଦେଶକ, ମେକପମ୍ୟାନ, ମଂଚପରିଚାଳକଙ୍କ ଅଭାବନଥିଲା । ସେ ବର୍ଷ ନାଟକ "ଲଳିତା" ମଂଚସ୍ଥ ହେବା ପାଇଁ ସ୍କୁଲ ଘରେ ରିହରସାଲ ଚାଲିଥାଏ । ଲୋକନାଥ ଭାଇ ନିର୍ଦ୍ଦେଶକ । ମୁଁ ବଳରାମ, ଧଡିଭାଇନା ପ୍ରଭୃତି ରୋଲ କରୁଥାଉ । ଦାମଭାଇନା ଧମିଲୋରେ ପୂଜାକାମ ସାରି ରିହର୍ସଲ୍‌ରେ ଯୋଗଦିଏ । ସେ ସମୟରେ ଆମ ଗ୍ରାମରେ (ଏ ଅଂଚଳ ମଧ୍ୟରେ) ନାଟକ ମଞ୍ଚସ୍ଥ ହେଉଥିବାରୁ ଆଖପାଖ ପ୍ରାୟ ୩୦ ଖଣ୍ଡ ଗାଁର ଲୋକ ଡ୍ରାମାଦେଖିବାକୁ ଆସନ୍ତି । ଭିଙ୍ଗାରପୁର ଚୌଧୁରୀଙ୍କ ଶଗଡ ଲାଗେ ।

ଡ୍ରାମା ଦିନ ମୁଁ ଗ୍ରୀନ୍ ରୁମ୍‌ରେ ଡ୍ରେସ ପିନ୍ଧୁଥାଏ । ଏ ସମୟରେ ବନଭାଇ ମୋତେ କହିଲେ ଭିକୁ ଖୁବ୍ ଭଲରେ ରୋଲ୍ କରିବୁ । ତୋ ଭାବିଶ୍ୱଶୁର

ଡ୍ରାମା ଦେଖିବାକୁ ଆସିଛନ୍ତି । ଡ୍ରାମାର ପରିବେଷଣ ଖୁବ୍ ସୁନ୍ଦର ହୋଇଥିଲା । ନାଟକରେ ଅଂଶଗ୍ରହଣ କରିଥିବା ସମସ୍ତ କଳାକାରଙ୍କ ଆକସନ୍, ନିର୍ଦ୍ଦେଶନା, ମଂଚ ପରିଚାଳନା, ସଂଗୀତ ସମସ୍ତ ବିଭାଗରେ ବିମୋହିତ ହୋଇ, ଭିଙ୍ଗାରପୁର ଚୌଧୁରୀ ପରିବାର କୌଣସି ଏକ ନିର୍ଦ୍ଦିଷ୍ଟ ବ୍ୟକ୍ତିକୁ ପୁରସ୍କାର ନଦେଇ ସମଗ୍ର ଅନୁଷ୍ଠାନକୁ ପୁରସ୍କୃତ କରିଥିଲେ ।

ନାଟକ ସରିଲା ପରେ ଦର୍ଶକମାନଙ୍କ ଘର ବାହୁଡା । ଫେରନ୍ତା ଶଗଡରେ ଥାଇ ଭିଙ୍ଗାରପୁର ଚୌଧୁରୀ ରାଧାଶ୍ୟାମ ଦାସ, ଧମିଲୋ ଜଗବନ୍ଧୁ ମହାନ୍ତିଙ୍କ କୁଶଳ ଜିଜ୍ଞାସା କଲେ । ଜଗବନ୍ଧୁ ମହାନ୍ତି ଗତକାଲିର ନାଟକର ସର୍ଦ୍ଦାରଙ୍କୁ ଜ୍ୱାଇଁ କରିବା ପାଇଁ ମନସ୍ଥ କରିଥିବା କଥା ଜଣାଇବାକୁ ଚୌଧୁରୀ ମହୋଦୟ କହିଥିଲେ ପିଲାଟି ସ୍ୱଳ୍ପ ସମୟ ମଧ୍ୟରେ ସର୍ଦ୍ଦାର ହୋଇ ଯେତେ ସୁନ୍ଦର ପାର୍ଟ କଲା ତାର ଜୀବନ ଚକ୍ର ମଧ୍ୟ ସେହିପରି ସରସ ସୁନ୍ଦର ହେବ ।

ମୋର ପାରିବାରିକ ଅସୁବିଧାକୁ ପଛରେ ପକାଇ ଆମ ଘରର ମୁରବୀଙ୍କ ନିକଟରେ ବନଭାଇ ଓ ଦାମ ଭାଇନାଙ୍କ ଉପସ୍ଥିତିରେ ବିବାହ ସ୍ଥିର କଲେ ।

ଶ୍ୱଶୁର ତାଙ୍କ ଭାଇ, ବନ୍ଧୁ କୁଟୁମ୍ବଙ୍କ ଅନିଚ୍ଛା ସତ୍ୱେ ମୋ ସହିତ ତାଙ୍କ ବଡ ଝିଅ କୃଷ୍ଣାଙ୍କର ବିବାହ ସ୍ଥିରିକୃତ କରିଥିଲେ ।

ମୁଁ ଧମିଲୋ, "ଛ" ଘରିଆ ପରିବାରର ହେଲି ବଡ ଜ୍ୱାଇଁ , ମୋ ଘରେ ତ ସର୍ବଦା ଅଭାବ ଲାଗିରହିଥାଏ । ତାକୁ ଆଖି ଆଗରେ ରଖି ଶ୍ୱଶୁର ତାଙ୍କ ଘରୁ ଧାନ, ନଡା ଶଗଡ ଆମ ଘରକୁ ପଠାଇଥାନ୍ତି । ତାଙ୍କର ଅଲିଅଳି ବଡ ଝିଅ କୃଷ୍ଣା, ମୋ ଅଭାବ ସଂସାରରେ ସାମିଲ ହୋଇଗଲେ । ଝିଅ ମନରେ (କିଛି ଅଭାବ ନେଇ) କାଳେ ମନକଷ୍ଟ ହେବ, ସେଥିପାଇଁ ସେ ଆମ ଘରକୁ ସପ୍ତାହରେ ଦୁଇଥର ଲୋକ ପଠାଇ ସବୁକିଛି ସୁଧାରି ନେଉଥିଲେ ।

ଦୁଃଖ କଥା ଶ୍ୱଶୁର ଜଗବନ୍ଧୁ ମହାନ୍ତିଙ୍କର ଆକସ୍ମିକ ବିୟୋଗ ହେଲା । ତାଙ୍କର ପିଲାମାନେ ଛୋଟଥାନ୍ତି । ତେଣୁ ମୋତେ (ବଡ ଜ୍ୱାଇଁ) ହିସାବରେ ତାଙ୍କ ଘର କଥା ବୁଝିବାକୁ ପଡିଥିଲା । ବାରମାସିଆ, କୋଠିଆ ରହିବା ଠାରୁ

ଆରମ୍ଭ କରି, ଧାନ ଅମଳ, ବିକ୍ରି, ନଡିଆ ତୋଳା ପର୍ଯ୍ୟନ୍ତ ସବୁକଥା ବୁଝୁଥିଲି, ଦୁଇ ଦୁଇଟି ଶାଳୀଙ୍କର ବିବାହ, ଶଳାର ପାଠପଢା, ଚାକିରୀରେ ଯୋଗଦାନ ଇତ୍ୟାଦି ମଧ୍ୟ ବୁଝିଛି । ସାନ ଶଳା ଧୃନ୍ଦ ଛୋଟ ହୋଇଥିବାରୁ ପାଖରେ ରଖି ପାଠପଢାଇ ମଣିଷ କରିଛି ।

ଜଗବନ୍ଧୁ ମହାନ୍ତିଙ୍କ ଗେହ୍ଲା ଝିଅ କୃଷ୍ଣା (ମନି) ମୋ ଅଭାବ ସଂସାରରେ ବୁଡିରହିଲେ । ସେଥିରେ ମୋର ପ୍ରକୃତ ଅନୁଗାମିନୀ । ବହୁତ ଦୁଃଖ କଷ୍ଟ ସହି କରି ଅନ୍ୟର ପେଟକୁ ଚିହ୍ନୁଥିଲେ । ସୂର୍ଯ୍ୟୋଦୟ ଠାରୁ ବିଳମ୍ବ ରାତ୍ର ପର୍ଯ୍ୟନ୍ତ "କୃଷ୍ଣା" ଚଳଚଞ୍ଚଳ ଥିଲେ । ମୁଁ ବହୁଦିନ ହଷ୍ଟେଲ ଦାୟିତ୍ୱରେ ଥିବାରୁ ଯେଉଁ ପିଲାମାନଙ୍କୁ ହଷ୍ଟେଲରେ ସିଟ ମିଳୁନଥିଲା ସେମାନେ ଆମ ଘରେରହିଯାଉଥିଲେ । ସେମାନଙ୍କ କାମ କରିବାକୁ "କୃଷ୍ଣା" (ମନି) ଜୀବଦସାରେ କେବେବି କୁଣ୍ଠାପ୍ରକାଶ କରିନାହାନ୍ତି ।

"କୃଷ୍ଣା" (ଯିଏକି ପରେ "ଗନିବୋଉ" ନାମରେ ପରିଚିତ ହେଲା) ଆମ ପରିବାରରେ ସାମିଲ ହେବାପରେ ଆମଘରର ଯଥେଷ୍ଟ ପରିବର୍ତ୍ତନ ଆସିଥିଲା । ସେଥିଲେ ସୁଗୃହିଣୀ, ତାଙ୍କର ସଦାଚାର, ସେବା ମନୋବୃତ୍ତି ମୋ ପରିବାରକୁ ଆଣିଦେଇଥିଲା "ସୁଖ ଓ ସମୃଦ୍ଧି, ଦୀର୍ଘ ୫୩ ବର୍ଷ ଅନେକ ସୁଖ ଦୁଃଖ ମଧ୍ୟରେ କାଳକାଟି ୧୯୯୩ ମାର୍ଚ୍ଚ ୧୦ ତାରିଖରେ ଗନିବୋଉ ଅହ୍ୟସୁଲକ୍ଷଣୀ ହେଲେ । ନିଜ ପରିବାର ଓ ଶ୍ୱଶୁର ଘର ପରିବାର ଅନେକ ଦାୟୀତ୍ୱ ନେଇଥିଲେ ମଧ୍ୟ ସ୍କୁଲ ଓ ହଷ୍ଟେଲ କାର୍ଯ୍ୟରେ କେବେବି ଖିଲାପ କରିନାହିଁ । ସୁନ୍ଦର ଗ୍ରାମ ସ୍କୁଲ ହଷ୍ଟେଲର ସୁପରିଚାଳନା ଏବଂ ତାର ସୁସ୍ୱାଦୁ ଡାଲମା ଦିନେ ତତ୍‌କାଳିନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କୁ ଆକୃଷ୍ଟ କରିଥିଲା ।

ଆଜିର ତଥା କଥିତ ହାଟତୋଟା ମଧ୍ୟରେ ହରିବାବୁ, ଉମାଭାଇ (ଆମ ଅଂଚଳର ପ୍ରଥମ Graduate) ମୁଁ, ବଳରାମ, ଧଡିଭାଇନା, ଉପେନ୍ଦ୍ର ଆଦି ବସିଥାଉ । ସେଦିନ ହାଇସ୍କୁଲ ଗଢିବାରେ ଝୁଙ୍କ ଆମ ସଭିଙ୍କ ମୁଣ୍ଡରେ ପସିଥିଲା । ସେ କଥା ଗ୍ରାମର ସମ୍ମାନନୀୟ ବ୍ୟକ୍ତି ଲୋକନାଥ ଭାଇଙ୍କ ଆଗରେ

କହିଲୁ । ସେ ଗାଁରେ ମାଇନର ସ୍କୁଲ ସ୍ଥାପନା କରାଇଥିଲେ । ତାଙ୍କର ଅନେକ ଅଭିଜ୍ଞତା ଥିଲା । ସ୍କୁଲ ଗଢିବାରେ ଥିବା ବହୁଘାତ ପ୍ରତିଘାତ ସେ ଅଙ୍ଗେ ଲିଭାଇଥିଲେ ।

ହାଇସ୍କୁଲ ଗଢିବାର ଝୁଙ୍କ ଆମ ମୁଣ୍ଡରେ ଏପରି ଦୃଢହୋଇଥିଲା ଯେ ଆମେ ଲୋକନାଥ ଭାଇଙ୍କ ପରି ଗଣ୍ୟମାନ୍ୟ ବ୍ୟକ୍ତିଙ୍କର କଥାରେ ଅବାଧ ହେଲୁ । ହାଇସ୍କୁଲ ଗଠନର ଆଦ୍ୟପର୍ବରେ ଗାଁ ଗାଁ ବୁଲି, ବାଉଁଶ , ନଡା, କାଠ ଆଣିଲୁ । କାଦୁଅ ଚକଟି କାନ୍ଥ ଦେଇଛୁ । ମିସ୍ତ୍ରୀଙ୍କ ସହ କାମ କରିଛୁ । ସଂକୀର୍ତ୍ତନ ମାଧମରେ ଗାଁ ଗାଁ ବୁଲି ସ୍କୁଲ ପାଇଁ ମୁଷ୍ଟିଭିକ୍ଷା ମାଗିଲୁ । ଆମ ଗାଁରେ ବହୁ ପୁରାକାଳରୁ ହେଉଥିବା ଡ୍ରାମା ନିମିତ୍ତ ମହଜୁତଥିବା, ସିନ, ସିନେରୀ, ପୋଷାକ ଇତ୍ୟାଦି ବିଭିନ୍ନ ସ୍ଥାନକୁ ଭଡାସୁତ୍ରରେ ଦେଇ ବିଦ୍ୟାଳୟ ଗଠନ ପାଣ୍ଠିକୁ ଅର୍ଥ ସଂଗ୍ରହ କଲୁ ।

ବିଦ୍ୟାଳୟର ପିଲାମାନଙ୍କୁ ସାଙ୍ଗରେ ନେଇ ବିଭିନ୍ନ ସ୍ଥାନ ବୁଲି, ସ୍କୁଲରେ ଛାତ୍ର ସଂଖ୍ୟା ବୃଦ୍ଧି କରାଇଲୁ । ହଷ୍ଟେଲର ଅନ୍ତେବାସୀଙ୍କ ସଂଖ୍ୟା ବେଳକୁ ବେଳ ବଢିବାରେ ଲାଗିଲା ।

ବନ୍ଧୁ ସ୍ୱାଧୀନତା ସଂଗ୍ରାମୀ ମୁରଲିଧର କାନୁନଗୋ ଏବଂ ଆମ ଗ୍ରାମର ଅବସରପ୍ରାପ୍ତ ପୋଲିସ ଅଫିସର ବୈକୁଣ୍ଠ ନାଥ ନନ୍ଦଙ୍କ ଦିଗ୍‌ଦର୍ଶନ, ଝରିଲୋ, ଇଶ୍ୱରପୁର, ଶିଶୋ, ଗରଗରା, ଖନ୍ଦୋଳ, ପାଟସୁନ୍ଦରପୁର ଆଦି ଗ୍ରାମବାସୀମାନଙ୍କ ଅକୁଣ୍ଠ ସାହାଯ୍ୟ ଓ ସହାନୁଭୂତିକୁ ପାଥେୟ କରି ସୁନ୍ଦରଗ୍ରାମ ହାଇସ୍କୁଲ ଗଢିଉଠିଲା ।

ମୁଁ ହଷ୍ଟେଲ ଦାୟିତ୍ୱରେ ବହୁତ ଦିନ ରହିଲା ପରେ ସେଥିରୁ ଅବ୍ୟାହତ ନେଲେ, ମଧ ହଷ୍ଟେଲରେ ରହୁଥିବା ପିଲାମାନଙ୍କର ତତ୍ତ୍ୱାବଧାରକ ଭାବେ ମୋତେ ବହୁତ ଦିନ କାର୍ଯ୍ୟ କରିବାକୁ ପଡିଲା । ପାଖ ଗାଁ ହାଟ ମାନଙ୍କରୁ ତୋଳା କରି ହଷ୍ଟେଲ ପାଇଁ ପନିପରିବା ଆଣିବା ବ୍ୟବସ୍ଥା କରୁଥିଲି । ଆମ ଅଞ୍ଚଳରେ କୌଣସି ପୋଖରୀରୁ ମାଛ ଧରାହେଲେ ହଷ୍ଟେଲ ପିଲାଙ୍କ ପାଇଁ

ସେଠାକୁ ଯାଇ ମାଛ ଆଣୁଥିଲି । ଅନେକ ଗରିବ ମେଧାବି ପିଲାଙ୍କୁ ବିଭିନ୍ନ ଜାଗାରୁ ଅର୍ଥସଂଗ୍ରହ କରି ଫ୍ରି ରେ ହଷ୍ଟେଲରେରହି ବିଦ୍ୟାଳୟରେ ପାଠ ପଢିବାର ବନ୍ଦୋବସ୍ତ କରାଯାଉଥିଲା ।

ମୋତେ ହଷ୍ଟେଲରେ ରାତିରେ ଖାଇବା ପାଇଁ ନିର୍ଦ୍ଦେଶ ଥିଲା । ଯେଉଁ ପିଲାମାନେ ଅଭାବରୁ ଘରେ ରାତିରେ ପଢିବାପାଇଁ ସୁଯୋଗ ପାଉନଥିଲେ, ସେମାନେ ହଷ୍ଟେଲକୁ ଆସି ଅନ୍ୟପିଲାଙ୍କ ସହ ପାଠ ପଢୁଥିଲେ । ମୁଁ ମୋ ପାଇଁ ଥିବା ରାତି ମିଲ୍‌ଟିକୁ ସେମାନଙ୍କୁ ଡାକି ଦେଇଦେଉଥିଲି ଏବଂ ରାତି ୧୦ଟା ୩୦ରେ ଘରକୁ ଫେରି ଘରେ ଖାଉଥିଲି ।

ସ୍ମରଣ ଆସେ ଥରେ ଜଣେ ମତ୍ସ୍ୟ ବ୍ୟବସାୟି ଗାଡିରେ ମାଛ ନେଇ ଯାଉଥିଲା ବେଳେ ସ୍କୁଲ ପାଖେ ଅଟକି ହଷ୍ଟେଲ ପିଲାଙ୍କ ଖାଇବା ପାଇଁ ଗୋଟେ ବଡ ଜଳଙ୍ଗ ମାଛ ପ୍ରଦାନ କରିଥିଲେ । ତାକୁ ଶୀଘ୍ର ନକାଟିଲେ ପଚିଯିବ । ସେ ଭୟରେ ହଷ୍ଟେଲ୍ ଭାଇନା ମୋ ପାଖକୁ ଖବର ଦେଲେ । ସେ ଦିନ ସଙ୍କରାନ୍ତି – ଉପବାସ କରିଥାଏ । ମୁଁ ଠାକୁରଙ୍କୁ ପ୍ରଣାମ ଜଣାଇ ମାଛଟିକୁ କୁରାଢିରେ କାଟିଲି । ସେଦିନ ରାତିରେ ହଷ୍ଟେଲ ପିଲାଙ୍କର ଜଳଙ୍ଗ ମାଛ ଖିଆର ଆନନ୍ଦ କହିଲେ ନସରେ । ରାତି ହୋଇଯାଇଥିବାରୁ କେବଳ ଗାଧୋଇ ପାଦୁକ ପାଇ ସେଦିନ ରହିଲି ।

ସ୍କୁଲ ଏବଂ ହଷ୍ଟେଲ ପିଲାଙ୍କୁ ମୁଁ ନିଜ ପିଲାପରି ଦେଖୁଥିଲି । ସେହି ପିଲାମାନଙ୍କର ସେବା ଯୋଗୁ ବିବାହର ଦୀର୍ଘ ୧୨ ବର୍ଷ ପରେମୁଁ ବାପା ଡାକ ଶୁଣିଲି ।

## (ଟ)

ପ୍ରାକ୍ ସ୍ୱାଧୀନତା ସମୟ, ହଠାତ୍ ମୋର ବଦଳି ଆଦେଶ ଧାଇଁଲି । ଯେଉଁ ଜାଗାରେ ମୋର ନିଯୁକ୍ତି ମିଳିଥିଲା ସେ ସ୍କୁଲକୁ ଯାଇ ଦେଖେତ ଦୁଇଟି ପିଲା ବିଦ୍ୟାଳୟ ବାରଣ୍ଡାରେ ବସିଛନ୍ତି । ସେଠାରେ ମୋର ସୁନ୍ଦରଗ୍ରାମ ସ୍କୁଲ ହଷ୍ଟେଲ ଓ ପିଲାମାନେ ଆଖିରେ ନାଚିଗଲେ । ସେଦିନ ସେ ବିଦ୍ୟାଳୟକୁ ଥିଲା ମୋର ପ୍ରଥମ ଏବଂ ଶେଷ ଯାତ୍ରା ।

ପରେ ଅନ୍ୟମାନଙ୍କଠାରୁ ଶୁଣିଲି ଲୋକନାଥ ଭାଇଙ୍କ ଅବାଧ ହେବାରୁ ମୋରଏହି ଦଶା ହୋଇଥିଲା । କିନ୍ତୁ ମୁଁ ତାକୁ ବିଶ୍ୱାସ କରିପାରି ନଥିଲି । ଚାକିରିରେ ଯୋଗ ନ ଦେବାରୁ ଚାକରିଟି ଚାଲିଗଲା । ଘରେ ପାଞ୍ଚପ୍ରାଣି କୁଟୁମ୍ବ । ଉତ୍କଟ ଅଭାବ ମଧ୍ୟରେ ଗତିକଲି । ସେ ସମୟରେ ଶ୍ୱଶୁର ଘରର ମୋ ଘରପ୍ରତି ସାହାଯ୍ୟ ପ୍ରକୃତ ବନ୍ଧୁର ନିଦର୍ଶନ ଥିଲା ।

ନୂଆ ହୋଇ ଓଡିଶାରେ ସୃଷ୍ଟି ହୋଇଥିବା Grow more food ରେ Agriculture sub overseer ଚାକିରି ପାଇଁ interview ଦେଲି । ମୋର posting ହେଲା ଜଗସିଂହପୁର ନିକଟସ୍ଥ ଅଣଖିଆ ସର୍କଲରେ । A.S.O ଚାକିରି ଏବଂ ଶିକ୍ଷକତାର ଚଳଣି ଥିଲା ସମ୍ପୂର୍ଣ୍ଣ ଭିନ୍ନ ।

ମୁଁ ଘରେ ଏକୁଟିଆ ଏକମାତ୍ର ପୁରୁଷ ହୋଇଥିବାରୁ ଘରେ ରାତ୍ର ରହଣି ମୋ ପକ୍ଷରେ ନିତାନ୍ତ ଜରୁରୀ ଥିଲା । ଘରେ ବଡବୋଉ, ସାନବୋଉ ଥାଆନ୍ତି, (ଯାହାଙ୍କର ବୟସ ପାଖାପାଖି ୮୦), ବଡ ଭାଉଜ, ମୋ ସ୍ତ୍ରୀ ଓ ଝିଆରୀ)

ତେଣୁ ପ୍ରତ୍ୟେକ ଦିନ ପଖାଳ ଖାଇ ପାଦରେ ଚାଲିକରି ଅଣଖିଆ ଯିବାକୁ ପଡେ । ସେଠି ଏରିଆରେ ହେଉଥିବା କାମ ଦେଖି ପୁଣି ରାତିରେ ଘରକୁ ଫେରେ । ଉପର ବର୍ଣ୍ଣିତ ପରିଶ୍ରମ ଓ ଅନିୟମିତ ଖାଦ୍ୟ ଗ୍ରହଣ ମୋର ପୁରୁଣା ବାତଜ୍ୱର (Faleria) ରୋଗକୁ ଡାକି ଆଣିଲା । ମୋର ଏକ ବଡ operation ହୋଇଥିଲା । ସେତେବେଳେ ଡାକ୍ତରଙ୍କ ପକ୍ଷେ ମୋ ଜୀବନ ରକ୍ଷା କରିବା କଷ୍ଟକର ହୋଇଥିଲା । ଭଗବାନଙ୍କ ଦୟାରୁ ବଞ୍ଚିଗଲି ସିନା, ଦୀର୍ଘଦିନ ଅନୁପସ୍ଥିତ ରହିବାରୁ Growmore food ରୁ ଚାକିରି ଚାଲିଗଲା ।

ସନ ୧୯୬୭ ମୁଁ ଗନି ସହିତ ପୁରୀ ଯାଇଥିବାବେଳେ ମୋର ତତ୍‌କାଳୀନ ଉପରିସ୍ଥ କର୍ମଚାରୀ ଶ୍ରୀଯୁକ୍ତ ରାମଚନ୍ଦ୍ର ମିଶ୍ରଙ୍କ ସହିତ ଅଚାନକ୍ ସାକ୍ଷାତ୍ ହୋଇଥିଲା । ସେ ମୋତେ ଚିହ୍ନିଲେ ଏବଂ ମୁଁ ସେ ଚାକିରି ଛାଡିଥିବାରୁ ମୋତେ ଧିକ୍କାରକଲେ । କାରଣ ମିଶ୍ର ବାବୁ ୧୯୬୭ ମସିହାରେ ଥିଲେ ସହକାରୀ କୃଷି ନିର୍ଦ୍ଦେଶକ ।

ସୁନ୍ଦରଗ୍ରାମ ସ୍କୁଲର ନୂଆ Managing Committee ହୋଇଥାଏ । କଟକ Engineering school ର ତତ୍‌କାଳୀନ Head clerk ✓ରାଜକିଶୋର ମହାନ୍ତି (ଆମ ଗାଁ ରାଜୁଭାଇ) Managing Committee ର Secretary ହୋଇଥାନ୍ତି । ସେ Secretary ଭାବେ ଯୋଗ ଦେଇ ଶିକ୍ଷାର ମାନ ବୃଦ୍ଧି ନିମନ୍ତେ ବିଦ୍ୟାଳୟରେ ଖାଲି ପଡିଥିବା ଶିକ୍ଷକ ମାନଙ୍କ ନିଯୁକ୍ତି ନିମନ୍ତେ ଜୋର ଦେଉଥାନ୍ତି ।

ତାଙ୍କଠାରୁ ନିର୍ଦ୍ଦେଶ ପାଇ ମୁଁ ଖାଲିଥିବା ଶିକ୍ଷକ ପୋଷ୍ଟରେ ସୁନ୍ଦରଗ୍ରାମ ସ୍କୁଲରେ ଯୋଗଦେଲି । ପୂର୍ବପରି Secretary ଙ୍କର ବ୍ୟକ୍ତିଗତ ସହାୟକ ଭାବେ ମୋତେ ସ୍କୁଲର କାଗଜପତ୍ର କାମ ମଧ୍ୟ କରିବାକୁ ପଡିଲା ।

ମୁଁ ମୋର ପୂର୍ବ Profession କୁ ଫେରିପାଇଲି । ଆଜି ମୁଁ ଭାବେ, ଛାତ୍ର ଛାତ୍ରୀ ମାନଙ୍କର ଆନ୍ତରିକତା ମୋତେ ଅନ୍ୟ କୌଣସି କାମରେ ନିଯୁକ୍ତି ନଦେଇ ପୁଣି ଶିକ୍ଷକତାକୁ ଫେରାଇ ଆସିଥିଲା ।

## (୦)

ସୁନ୍ଦରଗ୍ରାମ ହାଇସ୍କୁଲର ଖ୍ୟାତି ବଢିବାକୁ ଲାଗିଲା । ସରକାର ବିଦ୍ୟାଳୟକୁ ହାତକୁ ନେବାକୁ ଯୋଜନା କଲେ । ସେଥିରେ କେତେକ ସର୍ତ୍ତଥିଲା ।

(୧) ପ୍ରଥମରୁ ଏକାଦଶ ପର୍ଯ୍ୟନ୍ତ ଗୋଟିଏ ପ୍ରସାଶନରେ ଥିବା ବିଦ୍ୟାଳୟକୁ ସରକାର ନେବେ ନାହିଁ ।

(୨) ଷଷ୍ଠରୁ ଏକାଦଶ ପର୍ଯ୍ୟନ୍ତ ଶ୍ରେଣୀ ସରକାରୀ ସ୍କୁଲ ମଧ୍ୟରେ ରହିବ ।

(୩) ଯଦି ମାଇନର ସ୍କୁଲ ହାଇସ୍କୁଲରୁ ଅଲଗା ହବ ତେବେ ୨ ଜଣ ଶିକ୍ଷକ ବାଦ ପଡିବେ । ଏହିପରି ଅନେକ ।

ତେଣୁ ବିଦ୍ୟାଳୟର ଭବିଷ୍ୟତ ଓ ଶିକ୍ଷକମାନଙ୍କ ଭବିଷ୍ୟତକୁ ଆଖିରେ

ରଖି ଆମେ ଅଲଗା ହେଲୁ । ମୁଁ , ସ୍ୱର୍ଗତଃ ହରିବାକୁ ସ୍ୱର୍ଗତଃ ସାଧୁବାବୁ ପ୍ରାଇମେରୀ ସ୍କୁଲରେ ରହିଲୁ । ଅନ୍ୟ ସମସ୍ତ ଶିକ୍ଷକ ହାଇସ୍କୁଲରେ ରହିଲେ । ସେତେବେଳେ ବନ୍ଧୁ ବଳରାମ ହାଇସ୍କୁଲର ପ୍ରଧାନ ଶିକ୍ଷକ ହେଲେ ।

ଶିକ୍ଷା ବିଭାଗରେ ଅନେକ ଦିନ ଧରି କାଗଜ ପତ୍ର କାମ କରିବାର ଅଭିଜ୍ଞତା ଥିବାରୁ ମୋତେ ସୁନ୍ଦର ଗ୍ରାମ ହାଇସ୍କୁଲର କଥା ବୁଝିବାକୁ ହେଲା ।

ବିଧିର ବିଧାନ ବିଚିତ୍ର । ବିବାହର ୧୧ବର୍ଷ ପରେ ମଧ୍ୟ ଆମର କୌଣସି ସନ୍ତାନ ସନ୍ତତି ନଥିଲେ । ଅନେକ ପୂଜା ଉପାସନା ଏବଂ କୃଷ୍ଣାଙ୍କର ଆକୁଳ ନିବେଦନ ଠାକୁର ଶୁଣିଲେ । ୧୯୫୪-୫୫ ମସିହାରେ ଆମକୁ ଏକ ପୁତ୍ର ସନ୍ତାନ ଦେଲେ ଅବଶ୍ୟ ସେତେବେଳକୁ ମୋର ମାସିକ ୫ ଟଙ୍କା ଦରମା ବଢି ୩୨.୦୦ଟଙ୍କାରେ ପହଞ୍ଚିଥାଏ ।

ପୂର୍ବ ବର୍ଣ୍ଣିତ ଅସୁବିଧା ପ୍ରାୟ ଦୂରେଇ ଯାଇଥାଏ । ମୋର ସାନ ବୋଉ ମୃତ୍ୟୁ ବରଣ କରିସାରିଥାଏ । ଝିଆରୀର ମଧ୍ୟ ବିବାହ ସରିଯାଇଥାଏ । ବଡ ପୁଅ ଗନି ପରେ ଫନି, ମାମୀ, ଟନି ମୋ କୋଳକୁ ଆସିଲେ । ୧୯୬୬ ମସିହାରେ ସୁନ୍ଦରଗ୍ରାମ ହାଇସ୍କୁଲ ଆକାଶରେ କଳା ବାଦଲ ଆସିଗଲା । ସୁନ୍ଦରଗ୍ରାମ ହାଇସ୍କୁଲରେ ଷ୍ଟ୍ରାଇକ ହେଲା । ବଳରାମ ବଦଳି ହୋଇ ତିଗିରିଆ ହାଇସ୍କୁଲକୁ ଗଲା । ସତ୍ୟବାଦି ବାବୁ ବାଲିପାଟଣା ହାଇସ୍କୁଲକୁ ଗଲେ । ପରିବେଶ ଅନ୍ୟ ପ୍ରକାର ହେଲାରୁ ମୁଁ ଦରଖାସ୍ତ କରି କଣ୍ଟାପଡାକୁ ବଦଳି ହୋଇଗଲି ।

ସେତେବେଳେ ବାଇରୋଇରେ ବ୍ଲକ ଅଫିସ ଚାଲୁଥାଏ । ସ୍କୁଲ S.I. ସୁନ୍ଦରଗ୍ରାମ, ବ୍ଲକ୍ ଅଫିସ୍‌ରେ ଅନେକ ସମୟ କଟାଇଥାନ୍ତି । ତେଣୁ କଣ୍ଟାପଡାରେ ମୋର ରହଣୀ. ଏସ୍.ଆଇଙ୍କୁ କାର୍ଯ୍ୟରେ ସାହାଯ୍ୟ କରିବାକୁ ବହୁ ସୁବିଧା କରିଦେଲା ।

କଣ୍ଟାପଡା ସ୍କୁଲରେ ଯୋଗଦେବା ସମୟରେ ସେ ଗ୍ରାମର ମୁଖିଆ ସ୍ୱର୍ଗତଃ ରାଧୁ ବେହେରା ଓ ସ୍ୱର୍ଗତଃ ସପନି ବେହେରା କହିଥିଲେ ଏଥର

କଣ୍ଟାପଡାରେ ହାଇସ୍କୁଲ ହେବ । କାରଣ ଯେଉଁ କେତେଜଣ ସୁନ୍ଦରଗ୍ରାମରେ ହାଇସ୍କୁଲ ଗଢିଥିଲେ ସେମାନଙ୍କ ମଧ୍ୟରୁ ଜଣେ ଆଜି ଆମ କଣ୍ଟାପଡାରେ ।

ମୁଁ କଣ୍ଟାପଡା ଛାଡିଲାପରେ ଅବଶ୍ୟ ସେଠାରେ ହାଇସ୍କୁଲ ପ୍ରତିଷ୍ଠା ହେଲା କିନ୍ତୁ ମୋର କଣ୍ଟାପଡା ରହଣୀ ସମୟରେ ହାଇସ୍କୁଲ ଗଠନର ସମସ୍ତ ଆନୁଷଙ୍ଗିକ କାର୍ଯ୍ୟ ହୋଇ ସରିଥିଲା ।

କଣ୍ଟାପଡାରେ ଶିକ୍ଷକତା କରୁଥିବା ସମୟରେ ବ୍ଲକ୍‌ରେ ଏବଂ ଡେଲ୍‌ଟାରେ କାର୍ଯ୍ୟ କରୁଥିବା ଅଫିସର ମାନଙ୍କ ପିଲାମାନଙ୍କର ଗୃହ ଶିକ୍ଷକ ଭାବେ କାର୍ଯ୍ୟକରି ବହୁ ସୁନାମ ଅର୍ଜନ କରିଥିଲି ।

କଣ୍ଟାପଡା ବ୍ଲକ୍‌ରେ ଏସ୍.ଆଇ.ଙ୍କ ପିଏ ଥିବା ସମୟରେ ବ୍ଲକ୍ କଲୋନୀରେ ଏକ ପ୍ରାଥମିକ ବିଦ୍ୟାଳୟ ସ୍ଥାପନ କରାଇଥିଲି ଏବଂ ଖାଲିଥିବା ସମୟରେ ସେଠାରେ ଶିକ୍ଷାଦାନ କରୁଥିଲି ।

## (ଡ)

ଶିକ୍ଷକତା ସହିତ ସ୍କୁଲ ଏସ୍ ଆଇଙ୍କର କାର୍ଯ୍ୟାଳୟର ସମସ୍ତ କାମ କରୁଥିଲି । ଶିକ୍ଷକ ମାନଙ୍କ ଦରମା, ଛୁଟି ମଞ୍ଜୁର ବଦଳି ଆଦି କାର୍ଯ୍ୟ ସହିତ ନୂଆ ବିଦ୍ୟାଳୟ ଖୋଲିବା, ନୂତନ ଶିକ୍ଷକ ନିଯୁକ୍ତି ଆଦିର କାର୍ଯ୍ୟ ପାଇଁ ସମସ୍ତ କାଗଜ ପତ୍ର ମୁଁ ପ୍ରସ୍ତୁତ କରୁଥିଲି । ସ୍ୱଗତଃ ଶଙ୍କରବାବୁ, ନିତ୍ୟାନନ୍ଦବାବୁ, କୃଷ୍ଣ ବାବୁ ପ୍ରଭୃତି ଏସ୍.ଆଇ.ଙ୍କ ସଙ୍ଗେ କାର୍ଯ୍ୟ କରିବା ସମୟରେ ମୋତେ ଅନେକ ଥର ଡି.ଆଇ. ଡେପୁଟି ଇନ୍‌ସ୍ପେକ୍ଟର ଓ ଇନ୍‌ସ୍ପେକ୍ଟର ପ୍ରଭୃତିଙ୍କ ଇନସ୍ପେକଶନ୍ ସମୟରେ ମୁଁ ତାଙ୍କ ସହିତ ସୁରୁଖୁରୁରେ କାର୍ଯ୍ୟ ସମାପନ କରିଛି ଏବଂ ପ୍ରଶଂସା ଭାଜନ ହୋଇଛି ।

ମୋର ବାଲ୍ୟବନ୍ଧୁ ଭିଙ୍ଗାପୁର ସ୍କୁଲର ସାଙ୍ଗ ସ୍ୱର୍ଗତଃ ବାଳକୃଷ୍ଣ ତ୍ରିପାଠୀ ସୁନ୍ଦରଗ୍ରାମ ସର୍‌କଲକୁ ଏସ୍.ଆଇ ହୋଇ ଆସିଲେ । ପ୍ରଥମରେ ତ ମୋର ବାଲ୍ୟବନ୍ଧୁ ତାପରେ ମୋର ଉପରିସ୍ଥ କର୍ମଚାରୀ ତାଙ୍କ ସହିତ ଦୀର୍ଘଦିନ କାମ କରିବାର ସୁଯୋଗ ପାଇଛି । ଅତ୍ୟନ୍ତ ଉଚ୍ଚ କୋଟିର ଲୋକ । ଶିକ୍ଷକମାନେ

ଯେପରି ପହିଲାରେ ଦରମା ପାଇବେ ସେଥିନିମନ୍ତେ ସେ ବାରମ୍ବାର ତାଗିଦ୍ କରନ୍ତି । ବାଳକୃଷ୍ଣ ବାବୁ ସୁନ୍ଦରଗ୍ରାମ ସରକଲ୍‌ରେ ଏସ୍.ଆଇ ଥିବା ସମୟରେ ବହୁତ ନୂଆ ପ୍ରାଇମାରୀ ସ୍କୁଲ ଖୋଲା ହେଲା । ଅନେକ ସ୍କୁଲ ଉଚ୍ଚ ପ୍ରାଇମାରୀରେ ପରିଣତ ହେଲା ।

କୌଣସି ଶିକ୍ଷକ ଆର୍ଥିକ ଅନାଟନରେ ଗତି କରୁଥିଲେ ବାଳକୃଷ୍ଣବାବୁ ନିଜ ପକେଟ୍‌ରୁ ଟଙ୍କା କାଢ଼ି ଦେବାର ଅନେକ ନଜରି ଅଛି । ସେ ଥିବା ସମୟରେ ସୁନ୍ଦରଗ୍ରାମ ସର୍କଲ ଅଧିନରେ ଶିକ୍ଷକମାନେ ଛୁଟିରୁ ଫେରିବାର ୭ ଦିନ ମଧ୍ୟରେ ତାଙ୍କର ପ୍ରାପ୍ୟ ପାଇ ପାରୁଥିଲେ । ବାଳକୃଷ୍ଣବାବୁ ବିଦ୍ୟାଳୟରେ ଶିକ୍ଷାଦାନ ସହିତ କୋ-କରିକୁଲାର ଆକ୍ଟିଭିଟିଜ୍ ପ୍ରତି ଜୋର ଦେଉଥିଲେ । ତାଙ୍କ ସମୟରେ ସୁନ୍ଦରଗ୍ରାମରେ ବ୍ଲକ ସ୍ତରୀୟ ସ୍ପୋର୍ଟସ୍ ଓ ପ୍ରାଇଜ୍ ହେଉଥିଲା । ବିଭିନ୍ନ ବିଦ୍ୟାଳୟରୁ ପ୍ରତିଯୋଗୀ ମାନେ ତାଙ୍କ ଶିକ୍ଷକ ମାନଙ୍କ ସହ ସୁନ୍ଦରଗ୍ରାମ ଆସୁଥିଲେ । ସେଠାରେ ପ୍ରାୟ ୩ରୁ ୪ ଦିନ ରହି ସମସ୍ତ କାର୍ଯ୍ୟ ସାରି ପ୍ରାଇଜ୍ ବଣ୍ଟାହେଲା ପରେ ଫେରୁଥିଲେ ।

ଉପରୋକ୍ତ କାର୍ଯ୍ୟ ନିମନ୍ତେ ଦରକାର ପଡୁଥିବା ସମସ୍ତ ଅର୍ଥ ସଂଗ୍ରହର ଦାୟିତ୍ୱ ଏବଂ କାର୍ଯ୍ୟକ୍ରମର ସୁପରିଚାଳନା ଦାୟିତ୍ୱ ମୋର ଉପରେ ନ୍ୟସ୍ତ ଥିଲା ।

ଇଶ୍ୱର ପୁରର ସ୍ୱର୍ଗତଃ ଲୋକନାଥ ସାହୁ ଏବଂ ପାଟ ସୁନ୍ଦରପୁରର ସ୍ୱର୍ଗତଃ ଦିଗମ୍ବର ରାଉତରାୟ ପ୍ରଭୃତି ବଦାନ୍ୟ ବ୍ୟକ୍ତିଙ୍କ ସାହାଯ୍ୟରେ ବର୍ଣ୍ଣିତ କାର୍ଯ୍ୟକ୍ରମ ହୋଇ ପାରୁଥିଲା । ଆମ ଗାଁର ସ୍ୱର୍ଗତଃ ବିଜୟ ରାମ ମିଶ୍ର ପ୍ରାଇଜ୍ ଦେବା ପାଇଁ ସମସ୍ତ ଜିନିଷ ପ୍ରଦାନ କରୁଥିଲେ ।

ମନେପଡେ । ଆମ ସର୍କଲର ଜଣେ ଶିକ୍ଷକ ତାଙ୍କ ସ୍ତ୍ରୀଙ୍କ ଅସୁସ୍ଥତା ହେତୁ ଦୀର୍ଘ ଦିନ ଛୁଟିରେ ଥିଲେ । ସେ କାର୍ଯ୍ୟରେ ଯୋଗଦେବା ପରେ ତାଙ୍କର ଛୁଟି ମଞ୍ଜୁର ହୋଇଗଲା ଏବଂ ସେ ଖୁବ୍ ଶୀଘ୍ର ତାଙ୍କ ପ୍ରାପ୍ୟ ପାଇଗଲେ । ସେଥିନିମନ୍ତେ ସେ ଖୁସି ହୋଇ ଆମ ଗାଁ ଡାକଘରେ କାମ କରୁଥିବା ତାଙ୍କର ଜଣେ ସମ୍ପର୍କୀୟଙ୍କ ହାତରେ ମୋ ପାଖକୁ ୨୦ଟଙ୍କା ପଠାଇ ଥିଲେ । ସେ

ଭଦ୍ରଲୋକ ମୋତେ ସାକ୍ଷାତ କରି ସମସ୍ତ କହିବାପରେ ମୁଁ ତାଙ୍କୁ ମୋ ଚାଳକୁ ଦେଖାଇ କହିଥିଲି ଏପରି ପଇସା ନେଇଥିଲେ ମୋ ଘରେ କାହିଁକି ଗୁଞ୍ଜା ରୁଅ ଲାଗୁଥାନ୍ତା । ତୁମେ ଏ ଟଙ୍କାକୁ ତାକୁ ଦେଇ ଦବ କହିବ ତା ସ୍ତ୍ରୀ ପାଇଁ ଔଷଧ କିଣିବ ।

ଏ ସମସ୍ତ ବିଷୟ ମୁଁ ବାଳକୃଷ୍ଣ ବାବୁଙ୍କ ଆଗରେ ବର୍ଣ୍ଣନା କରିଥିଲି । ସେ ଗୋଟିଏ ମନଖୋଲା ହସ ହସି କହିଥିଲେ, ଭିକାରୀ ମହାନ୍ତି ତୋ ଦୁଃଖର ରାତି ପାହି ଆସୁଛି । ଖୁବ୍ ଭଲ କରିଛୁ । ତୁ କୋଠା ଘରେ ରହିବୁରେ ।

ହାଏ ! ବନ୍ଧୁ ସ୍ୱର୍ଗତଃ ବାଳକୃଷ୍ଣ ବାବୁ ମୋର କୋଠାଘର ଦେଖିବାକୁ ରହିପାରିଲେ ନାହିଁ ।

## (ଢ)

ରାଜୁ ଭାଇ ସୁନ୍ଦରଗ୍ରାମ ସ୍କୁଲର ସେକ୍ରେଟାରୀ ଥିବା ସମୟରେ ମୋତେ Basic ଟ୍ରେନିଙ୍ଗ୍ ଏବଂ ଏଲିମେଣ୍ଟାରୀ ଟ୍ରେନିଙ୍ଗ୍ ନେବାକୁ ପଠାଇ ଥିଲେ । ବାଳକୃଷ୍ଣ ବାବୁ ଏସ୍.ଆଇ ଥିବା ସମୟରେ ପ୍ରଥମ କରି ପ୍ରାଇମାରୀ ସ୍କୁଲ ଶିକ୍ଷକ ମାନଙ୍କର କ୍ୟାଡରାଇଜେସନ୍ ହେଲା । ମୋତେ ମାଟ୍ରିକ ସିଟିର ମାନ୍ୟତା ମିଳିଲା । ମୁଁ ଟ୍ରେଣ୍ଡ ମାଟ୍ରିକ ହାରରେ ଦରମା ପାଇଲି । ମୋର ଆର୍ଥିକ ଅବସ୍ଥାର ପରିବର୍ତ୍ତନ ହେବା ସମୟରେ ମୋ ବଡ ପୁଅ ଅପସ୍ମାର ରୋଗରେ ପୀଡିତ ହେଲା । ସେ ସେତେବେଳକୁ ହାଇସ୍କୁଲର ଛାତ୍ର । ବନ୍ଧୁ ସ୍ୱଗତଃ ମୁରଲିଧର କାନୁନ୍ ଗୋ ସେତେବେଳେ ଏମ୍.ଏଲ୍.ଏ ଥାନ୍ତି । ମୁରଲି ବାବୁ ମୋ ପୁଅକୁ ସାଙ୍ଗରେ ନେଇ ତତ୍କାଳୀନ ଶିଶୁଭବନର ନିର୍ଦ୍ଦେଶକ ଡାକ୍ତର ଶରତ ଚନ୍ଦ୍ର ମିଶ୍ରଙ୍କ ତତ୍ତ୍ୱାବଧାନ ରେ ଚିକିତ୍ସା କରାଇଲେ । ଜଣେ ସ୍ୱଳ୍ପବେତନ ଭୋଗୀ ପ୍ରାଥମିକ ଶିକ୍ଷକ ବହୁତ ପଇସା ଖର୍ଚ୍ଚ କରି ଦୀର୍ଘଦିନ ନିରନ୍ତର ଚିକିତ୍ସା କରାଇ ତାକୁ ଆରୋଗ୍ୟ କରିଥିଲା । ଠାକୁରଙ୍କ ନିକଟରେ ମୋର ଏବଂ ତାର ମାର ବିକଳ ନିବେଦନ ପୁଅର ପୁର୍ନଜନ୍ମ ଆଣିଦେଲା ।

ଫନି, ମାମି ଟନି ଛୋଟଥାନ୍ତି । ଗନି ମାଟ୍ରିକ ପାସ୍‌ପରେ ବି.ଜେ.ବି

କଲେଜରେ ନାମ ଲେଖାଇଲା ଦରମାତ ଅଳ୍ପ ପାଉଥାଏ । ବହୁ କଷ୍ଟରେ ମାସକୁ ତାକୁ ୩୫ଟଙ୍କା ଦିଏ । ସେ ଟିଉସନ କରି ତାର ବାକିଖର୍ଚ୍ଚ ତୁଲାଏ । ମୁଁ ସର୍ବଦା ତାକୁ ମୋର ଅଙ୍ଗେଲିଭା କଥା ଶୁଣାଇ ନିଜ ଗୋଡରେ ନିଜେ ଛିଡା ହେବା ପାଇଁ ଉପଦେଶ ଦେଉଥିଲି । ମୋର ଦ୍ୱିତୀୟ ପୁଅ ଫନି କଟକ ଇଞ୍ଜିନିୟରିଂ ସ୍କୁଲରେ ପଢିଲା । ଗନି ସେ ସମୟରେ ବିଏ ପରୀକ୍ଷା ପରେ ବଡବିଲ୍ ହାଇସ୍କୁଲରେ ଶିକ୍ଷକତା କରୁଥାଏ । ଫନି ଷ୍ଟାଇପେଣ୍ଡ ପାଇ ପାଠ ପଢୁଥାଏ ।

ଉପର ବର୍ଣ୍ଣିତ ପରିସ୍ଥିତିରେ ମୋର ସଂସାର ଚାଲେ । ସ୍ଥିର କଲି ବାପା, ଜେଜେ ବାପାଙ୍କ ଅମଳର ଘରକୁ ବଦଳାଇ ମୁଣ୍ଡ ଗୁଞ୍ଜିବାକୁ ଖଣ୍ଡେ ଭଲ ଘର କରିବି କିନ୍ତୁ ମୋ ଆଶା ଆଶାରେ ରହିଲା ।

ବିପଦ ଥିଲା ମୋର ଚିରଦିନର ସାଥି । "ମକଦମା" ରୁପୀ ବିପଦ, ଆଶା କରିଥିବା ପ୍ରଗତିରେ ଅଙ୍କୁଶ ଲଗାଇଦେଲା ।

## (ଣ)

'ମକଦମା', 'ମ'ରେ ମନ, 'କ'ରେ କଉଡି, 'ଦ'ରେ ଦଉଡ ଧାପଡ, 'ମା'ରେ ମାମଲତକାରୀ ଚାରୋଟି କୁ ଭଲ ଭାବରେ ପରିଚାଳନା କରିପାରିଲେ ମକଦମାରେ ଜିତି ହୁଏ ବୋଲି ପ୍ରବାଦ ଅଛି । ମୋର ମକଦମାର ତିକ୍ତ ଅନୁଭୁତିକୁ ସ୍ମରଣ କରି ଠାକୁରଙ୍କୁ ସର୍ବଦା ଡାକେ ଭଗବାନ କୌଣସି ଶତ୍ରୁଘରେ ମକଦମା ନ ପୁରାନ୍ତୁ ।

ରାତି ରାତି ବଡ ହୋଇଯିବାର ନିଶା ବିପଦକୁ ଟାଣି ଆଣେ । ଆମ ଗ୍ରାମକୁ ବିଜୁଳି ଲାଇନ ଆସିବା ପରେ ଗାଁରେ ଗୋଟିଏ ଧାନକଳ ବସିଲା । ସେଠାରେ ବହୁତ ଭିଡ ହେଉଥିବାରୁ ମୋର ଜଣେ ବାଲ୍ୟ ବନ୍ଧୁଙ୍କର ଶାଳକ ଆମ ଗାଁରେ ଏକ କଳ ସ୍ଥାପନ ପାଇଁ ମନସ୍ଥ କଲେ । ଦୈବାତ୍ ରାସ୍ତା କଡରେ ମୋର ଖଣ୍ଡେ ଜାଗା ଥିଲା । ବନ୍ଧୁଙ୍କ ଶାଳକ ଜଣେ ବଡ ବ୍ୟବସାୟୀ । କଥା ହେଲା ବନ୍ଧୁଙ୍କ ଶାଳକ ଘର କରି କଳ ବସାଇବେ ଯାହା ଇନ୍‌କମ୍ ହେବ

ଦଶଣା ବନ୍ଧୁଙ୍କ ଶାଳକଙ୍କର ଏବଂ ଛଅଣା ମୋର । ବନ୍ଧୁଙ୍କ ଶାଳକ ବିରାଟ ବଡଲୋକ । ତାଙ୍କ ଗୁମାସ୍ତା କଳକଥା ବୁଝନ୍ତି । ସେ କେବେ ଆସନ୍ତି ନାହିଁ । ଗୁମାସ୍ତା ତାଙ୍କର ନିଜର ଫାଇଦା ପାଇଁ ମୋ ବିରୁଦ୍ଧରେ ବନ୍ଧୁଙ୍କ ଶାଳକଙ୍କୁ ଏବଂ ତାଙ୍କ ବିରୁଦ୍ଧରେ ମୋତେ କହନ୍ତି । ଗୁମାସ୍ତା ମହୋଦୟ ମୋଟେ ଇନ୍‌କମ ହେଉନାହିଁ ଏବଂ କଳ କ୍ଷତିରେ ଚାଲୁଛି ବୋଲି କୁହନ୍ତି । ମୋର ତ ବିନା ପରିଶ୍ରମରେ କିଛି ପଇସା ପାଇବାର ଆଶାଥାଏ । କ୍ରମେ ଆମ ସମ୍ପର୍କର ଦୂରତା ବଢିଲା ଏବଂ ତିକ୍ତତା ଆସିଲା । ମୁଁ ଥରେ ବିରକ୍ତ ହୋଇ ତାଙ୍କୁ ମୋ ଜାଗାରୁ କଳ ଉଠାଇ ନେବାକୁ କହିଲି । ତାର ପରିଣାମରେ ଗୁମାସ୍ତା ମହୋଦୟ ଷଡଯନ୍ତ କରି ମୋ ଜାଗାରେଥିବା ବାଡ ଗଛ ଆଦି ନଷ୍ଟ କରିଦେଲେ ।

ମୁଁ ସମାଧାନ ପାଇଁ ପୋଲିସର ଆଶ୍ରୟ ନେଲି । କିନ୍ତୁ ଉପର ବର୍ଣ୍ଣିତ ଗୁମାସ୍ତା, ବନ୍ଧୁଙ୍କର ଶାଳକଙ୍କୁ କହିଲେ ମୋ ନାମରେ ଏକ ଦେଓ୍ୱାନୀ ମକଦ୍ଦମା ଦାୟର କଲେ । ମୁଁତ ମାଷ୍ଟ୍ରିଆ ଲୋକ, ସ୍ୱଳ୍ପ ରୋଜଗାର । ସାଇକେଲ୍‌ରେ ମକଦ୍ଦମା ନିମନ୍ତେ କଟକ ଦଉଡି ଦଉଡି ନୟାନ୍ତ ହୋଇଗଲି ।

ଦୈବାତ୍, ମୋର ସମ୍ପର୍କୀୟ ଭାଣିଜୀ ଜୋଇଁ ସ୍ୱଗତଃ ଗୋଲଖଙ୍କ ସହିତ କୋର୍ଟ ନିକଟରେ ଦେଖାହେଲା । ସେ ମୋତେ କୋର୍ଟ ନିକଟରେ ଦେଖି ଆଶ୍ଚର୍ଯ୍ୟ ହେଲେ । ସମସ୍ତ ଶୁଣି ସାରିବା ପରେ ନିଜେ ସମ୍ପୃକ୍ତ ହୋଇ ମକଦ୍ଦମାର ରଫା କରାଇଦେଲେ । ସେ ସମୟରେ ତାଙ୍କର ସହରରେ ବହୁତ ଖାତିର ଥିଲା ।

ଏତଦ୍ ବ୍ୟତୀତ ମୋର ପଡିଶା ମଧ୍ୟ ମୋ ନାମରେ ଏକ ଦେଓ୍ୱାନୀ ମକଦ୍ଦମା କରିଥିଲେ । ତାଙ୍କର ଭ୍ରାନ୍ତ ଧାରଣା ଓ ଜିଦ୍‌ଖୋର ମନବୃତ୍ତି କୌଣସି ସମାଧାନର ସୂତ୍ର ନଆଣି ମକଦ୍ଦମାର ରୂପ ନେଇଥିଲା । ମୁଁ ସମସ୍ତ କାଗଜ ପତ୍ର ନେଇ ମୋର ମାମୁଁ ଶ୍ୱଶୁରଙ୍କ ବଡ ପୁଅ ସ୍ୱର୍ଗତଃ ଜୟ କୃଷ୍ଣ ପଟ୍ଟନାୟକଙ୍କ (ପୁରୀର ପ୍ରତିଷ୍ଠିତ ଓକିଲ)ଙ୍କୁ ଦେଖାଇଥିଲି । ସେ ସମସ୍ତ କାଗଜ ପତ୍ର ଦେଖି କହିଥିଲେ ଦେଓ୍ୱାନୀ ମକଦ୍ଦମାରେ ରେକର୍ଡକୁ ଜୋର ଦିଆଯିବ । ତୁମରତ

ରେକର୍ଡ ଠିକ୍ ଅଛି ତେଣୁ କେସ୍ ତୁମେ ଜିତିବ । ମୁଁ ପଚାରିଥିଲି ମକଦମା କେବେ ଛିଡିବ । ସେ ହସିଦେଇ କହିଥିଲେ ତୁମେ ତ ମାଷ୍ଟ୍ରିଆ ଲୋକ । ପିଲାଙ୍କୁ ପାଠ ଦେଇ ପାଠ ଆଦାୟ କଲାପରି କଣ ପଚାରୁଛ । ଦେୱାନୀ ମକଦ୍ଦମା ଛିଡିବାକୁ ୨୦ ରୁ ୩୦ ବର୍ଷ ବି ଲାଗିପାରେ ପ୍ରକୃତରେ ୧୧ ବର୍ଷ ପରେ ମକଦମାର ଅନ୍ତହେଲା । ମୋର ସେ ଦୁର୍ଦ୍ଦିନ ସମୟରେ ପୁତୁରା ସ୍ୱର୍ଗତଃ ଚିନ୍ତାମଣି, ସ୍ୱର୍ଗତଃ ବୁଦ୍ଧଭାଇ ଏବଂ ସ୍ୱର୍ଗତଃ ଉପେନ୍ଦ୍ରଙ୍କ ସାହାଯ୍ୟ ଭୁଲିହେବ ନାହିଁ ।

ଉପର ବର୍ଣ୍ଣିତ ଅନାଗତ ବିପଦ ନେଇ ମୋର ଘର ତିଆରିର ଇଚ୍ଛା ୧୨ ବର୍ଷ ଘୁଞ୍ଚିଗଲା ।

## (ଟ)

ସନ୍ ୧୯୭୭ ମସିହାରେ ଚାକିରିରୁ ଅବସର ନେଲି । ସେତେବେଳେ ସୁନ୍ଦରଗ୍ରାମରୁ ବଦଳି ହୋଇଯାଇଥିବା ଏସ୍.ଆଇ.ବାଳକୃଷ୍ଣ ବାବୁ ପୁନର୍ବାର ଏସ୍.ଆଇ ଭାବେ ଯୋଗ ଦେଇଥାନ୍ତି । ପୂର୍ବରୁ ବର୍ଣ୍ଣନା କରାଯାଇଥିବା ସୁନ୍ଦରଗ୍ରାମ ସର୍କଲ ଭାଙ୍ଗି ୩ଟି ନୂଆ ସର୍କଲ, ହୋଇଥାଏ । ସରକାରଙ୍କ ନିୟମ ଅନୁଯାୟୀ ପ୍ରତ୍ୟେକ ଏସ୍.ଆଇଙ୍କ ଅଫିସ କାର୍ଯ୍ୟ ତୁଲାଇବା ପାଇଁ ଜଣେ ଜଣେ ଆଟାଚ ଟିଚର ନିଯୁକ୍ତି ପାଉଥାନ୍ତି । ମୋର ପୂର୍ବ କାର୍ଯ୍ୟର ଅଭିଜ୍ଞତାଙ୍କୁ ଦୃଷ୍ଟିରେ ରଖି ମୋତେ ବାଳକୃଷ୍ଣବାବୁ ଏସ୍.ଆଇ.ଙ୍କ ଆଟାଚ୍ ଟିଚର ଭାବେ ନିଯୁକ୍ତି ହେଲେ ।

ମୁଁ ଅବସର ନେବା ପର୍ଯ୍ୟନ୍ତ ତାଙ୍କ ସହିତ ଆଟାଚ୍ ଟିଚର ଭାବେ କାର୍ଯ୍ୟ କରୁଥିଲି । ମୋତେ ଅବସର କାଳୀନ ବିଦାୟ ସମ୍ବର୍ଦ୍ଧନା ଦେବା ନିମନ୍ତେ ବାଳକୃଷ୍ଣ ବାବୁ ପୂର୍ବତନ ଅବିଭକ୍ତ ସୁନ୍ଦରଗ୍ରାମ ସର୍କଲର ସମସ୍ତଙ୍କୁ ଡକାଇ ବିଦାୟକାଳୀନ ସଭା କରିଥିଲେ । ମୁଁ ଅବିଭକ୍ତ ସୁନ୍ଦରଗ୍ରାମ ସର୍କଲର ସମସ୍ତ ଶିକ୍ଷକ ବନ୍ଧୁଙ୍କର ସାର୍ବଜନୀନ ବଡଭାଇ ଥିବାରୁ ସମସ୍ତେ ସମସ୍ୱରରେ ଏକ ଭବ୍ୟ ବିଦାୟ ସବର୍ଦ୍ଧନା ଦେବା ନିମନ୍ତେ ସ୍ଥିର କଲେ ।

ମୋର ବିଦାୟକାଳୀନ ସମ୍ବର୍ଦ୍ଧନା ସଭାରେ କଣ୍ଟାପଡା ବ୍ଲକ୍‌ର ପ୍ରାୟ ସମସ୍ତ ଶିକ୍ଷକ୍ ମୋର ଅନେକ ପୁରାତନ ଛାତ୍ର ଯୋଗ ଦେଇଥିଲେ । ପ୍ରଥମ କରି ମୁଁ ବାଳକୃଷ୍ଣବାବୁଙ୍କ ଆଖିରେ ଲୁହ ଦେଖିଥିଲି ।

ଅବସର ପରେ ଘରେ ଆସି ରହିଲି । ମୋର ପଞ୍ଚାକ୍ଷର ଜପିବା ଆରମ୍ଭ ହେଲା । ଫନିର ପଢା ସରିନାହିଁ ଝିଅ ବାହାଘର ମୁଣ୍ଡ ଉପରେ । ଘର ନାହିଁ । ପ୍ରାଇମାରୀ ସ୍କୁଲର ଅବସର ପ୍ରାପ୍ତ ଶିକ୍ଷକଙ୍କର ଅନୁକମ୍ପାମୂଳକ ପେନସନ ମାସକୁ ମାତ୍ର ୬୫ଟଙ୍କା କଣ କରିବି ?

## (ଥ)

ଅବସର ଜୀବନର ଅୟମାରମ୍ଭ ଚାକିରି ଜୀବନକାଳ ପିଲାମାନଙ୍କ ଗହଣରେ ଦିନକୁ ୨୪ ଘଣ୍ଟାରୁ ୧୬ଘଣ୍ଟା କଟାଉଥିଲି । ଏହି ଘଡି ସନ୍ଧି ମୁହୂର୍ତ୍ତରେ କଣ୍ଟାପଡା ବ୍ଲକ୍ କଲୋନୀରୁ ଖବର ପାଇ ସେଠାରେ ଗୃହ ଶିକ୍ଷକ ଭାବରେ ନିଯୁକ୍ତି ପାଇଲି । ସେଠାରୁ ଫେରିଲା ପରେ ଘରେ ଅପେକ୍ଷା କରିଥିବା ରବି, ନୁକୁ, କୁଇଁ, ମୁଚୁ, ଆଦି ଅନେକ ପିଲାଙ୍କୁ ଶିକ୍ଷାଦାନ ଦେଇ ସମୟ କାଟେ । ଅବଶ୍ୟ ଶିକ୍ଷାଦାନ ବାବଦରେମୋତେ ପାରିଶ୍ରମିକ ମିଳେ । ତେଣୁ ମୋର ଶିକ୍ଷକ ବନ୍ଧୁ ସ୍ୱଗତଃ ସତ୍ୟବାଦୀ ବାବୁଙ୍କ ଠାରୁ ଶିଖିଥିବା ଗୁଡାଖୁ ଘଷା ପାଇଁ ଅନ୍ୟ କାହାକୁ ଅପେକ୍ଷା ନ କରି ଖର୍ଚ୍ଚ ମେଣ୍ଟାଇଲି । ଘର କାମ ଆରମ୍ଭ କରିଥିଲି ସିନା ତାକୁ ସାରିପାରି ନଥିଲି । କିନ୍ତୁ ଅବସର ନେଇଗଲି ।

ମୁଁ ଅବସର ନେବା ପରେ ପରେ ଗନି ବୋଉ ଗନିର ବିବାହ ନିମନ୍ତେ ବ୍ୟସ୍ତ ହୋଉଠିଲେ । ୧୯୭୯ରେ ଗନିର ବିଭାଘର ହେଲା । ଯାଜପୁରର ବାଙ୍କିପାଳ ଗ୍ରାମରେ । ତା ଶ୍ୱଶୁର ନନ୍ଦ କିଶୋର ମହାନ୍ତି ସେ ସମୟରେକଟକ କଲେକ୍‌ଟରେଟରେ ହେଡ୍‌କ୍ଲର୍କଥାନ୍ତି । ଯାଜପୁରରେ ବନ୍ଧୁ ବାନ୍ଧିଥିବାରୁ ମୋତେ ସମସ୍ତେ ଥଟ୍ଟା କରୁଥାନ୍ତି । କିନ୍ତୁ ମୋ ସମୁଦି ନନ୍ଦବାବୁଙ୍କ ଠାରେ ତଥା କଥିତ ଯାଜପୁରିଆ ବାସ୍ନା ମୋଟେ ନଥିଲା । ସେ କଟକରେ ଥିବା ପର୍ଯ୍ୟନ୍ତ ସର୍ବଦା ମୋ ଅସମୟରେ ଛିଡା ହେଉଥାନ୍ତି । ତାଙ୍କ ଝିଅ କଟକରେ

ଜନ୍ମ ହୋଇ ବୋର୍ଡ ସ୍କୁଲରେ ପାଠପଢି ମଫସଲକୁ ମୋର ବଡ ବୋହୂ ହୋଇ ଆସିଲା । ସେ ତା ଶାଶୁ ପରି ଘରର ସମସ୍ତ ଦୁଃଖ ସୁଖରେ ସାମିଲ ହୋଇ ମୋ ଘରକୁ ସମ୍ଭାଳି ନେଲା । ଫନି ପାଠପଢା ସରିବାର ଅଳ୍ପ ଦିନ ମଧ୍ୟରେ ସବ୍‌ଆସିଷ୍ଟାଣ୍ଟ ଇଂଜିନିୟର ଚାକିରି ପାଇଲା । Hand to mouth ପରିବାରରେ ଆଶାର ସଞ୍ଚାର ହେଲା । ୧୯୮୧ ମସିହାରେ ମୋର ଏକମାତ୍ର ଝିଅ ମାମିର ନିମାପଡାରେ ଏକ ସତ୍‌ସଙ୍ଗୀ ପରିବାରରେ ବିବାହ ହେଲା । ଫନି ପାଇଁ ମାହାଙ୍ଗାର ବିଶିଷ୍ଟ ସମାଜସେବୀ ପ୍ରଶାନ୍ତ କାନୁନ୍‌ଗୋଙ୍କ ଝିଅଙ୍କୁ ବୋହୂକରି ଆଣିଲି । ସାନ ସମୁଦି ନିହାତି ଭଦ୍ରଲୋକ । ମୁଁ କଥା ପ୍ରସଙ୍ଗରେ ସର୍ବଦା ତାଙ୍କୁ କହେ ତୁମ ଭଳିଆ ଭଦ୍ର ଲୋକକଣ ରାଜନୀତି କରନ୍ତି ।

## (ଦ)

ତା'କଥା ଲେଖିଲା ବେଳକୁ ମୋର ଧର୍ଯ୍ୟଚ୍ୟୁତ ହେଉଛି । ନ ଲେଖିଲେ ମନ ସଂମ୍ପୂର୍ଣ୍ଣ ହେଉନାହିଁ । (କିରଣ–କିନି) ଆଜନ୍ମ ଦୁଃଖୀନୀ ବଡ ବାପା ବ୍ରଜବନ୍ଧୁଙ୍କ ପୁଅ ରାମ ଭାଇଙ୍କ ଝିଅ କିରଣ, ଆମେ ଶ୍ରଦ୍ଧାରେ ଡାକୁଥିଲୁ କିନି । ରାମଭାଇ ଅଧିକାଂଶ ସମୟ ବାହାରେ ରହୁଥିଲେ । ତେଣୁ ଗାଁର ମୁଷ୍ଟିମେୟ ଲୋକ ତାଙ୍କୁ ଜାଣିଥିଲେ । ଘର ସହିତ ପ୍ରାୟ ତାଙ୍କର ସମ୍ପର୍କ ନଥିଲା । ତାଙ୍କର ପ୍ରଥମ ଚିଠି ଗୌହାଟିରୁ ଆସିଥିଲା । ସେଥିରୁ ଜଣାପଡିଲା ସେ Rayal Military ରେ Dresser ଥିଲେ । ତାଙ୍କ ଚାକିରୀ କାଳରେ ଘରକୁ ଦୁଇଖଣ୍ଡି ମାତ୍ର ଚିଠି ଦେଇଥିଲେ । ଗୋଟିଏ "ଦିଗ୍‌ବୋଇ"ରୁ ଅନ୍ୟଟି ରେଂଗୁନ୍‌ରୁ । ବିଶ୍ୱଯୁଦ୍ଧ ସରିବାର ଅନେକ ଦିନ ପରେ ହଠାତ୍ ଦିନେ ଗାଁରେ ରାମଭାଇ ପହଞ୍ଚିଲେ । ବୟସ ୩୭ ହେବ । ସେ ସମୟରେ ଗାଁ ଲୋକ ଅନେକ କଥା କହିଲେ । ବାପା ତାଙ୍କର ବିବାହ ଯାଗମରା ସ୍ୱର୍ଗତ ଜଗମୋହନ ପଟ୍ଟନାୟକ ପରିବାରରେ କରାଇଥିଲେ ।

ରାମଭାଇଙ୍କ ଜୀବନ କାଳର ଅଧିକାଂଶ ସମୟ ବାହାରେ କଟିଥିଲା ତେଣୁ ସେ ଘର ମଧ୍ୟରେ ଆବଦ୍ଧ ହୋଇ ରହିପାରିଲେ ନାହିଁ । ହଠାତ୍ ଦିନେ ଘରୁ ଅନ୍ତର୍ଦ୍ଧ୍ୟାନ ହୋଇଗଲେ । ସେତେବେଳେ କିରଣ ମା ଗର୍ଭରେ ଥାଏ ।

କିରଣ ଜନ୍ମର ଅନେକ ଦିନପରେ ଆମେ ଜାଣିବାକୁ ପାଇଲୁ ଯେ ସେ ସାକ୍ଷୀଗୋପାଳରେ ଶିକ୍ଷକତା କରୁଛନ୍ତି । ମୋ ଅଭାବ ସଂସାର ମଧ୍ୟରେ କିନିର ଆଗମନକୁ ସ୍ୱାଗତ କରିଥିଲୁ । କିନୁକୁ ଦୁଇବର୍ଷ ବୟସ ହେବ । ହଠାତ୍ ସାକ୍ଷୀଗୋପାଳରୁ ଦିନେ ଚିଠି ଆସିଲା ରାମଭାଇ ହଇଜାରେ ମୃତ୍ୟୁବରଣ କରିଛନ୍ତି । ଆମ ପରିବାରର ସମ୍ପର୍କୀୟ ପୁତୁରା ସ୍ୱର୍ଗତ ନନ୍ଦକିଶୋର ସାକ୍ଷୀଗୋପାଳଯାଇ ସମସ୍ତ ତଥ୍ୟ ବୁଝିଲେ । ସେ ସମୟରେ ହଇଜାକୁ ଠାକୁରାଣୀ କୁହାଯାଉଥିବାରୁ ତାଙ୍କ ଶବକୁ ସାକ୍ଷୀଗୋପାଳରେ ଅନ୍ୟ ହଇଜା ରୋଗୀଙ୍କ ସାଥିରେ ପୋତି ଦିଆଯାଇଥିଲା ।

ସେ ସମୟରେ କିନି କଥା କହି ଶିଖୁଥାଏ । ପ୍ରଥମେ କଥା କହି ମୋତେ ବାପା ବୋଲି ଡାକିଲା । ଅନେକ ଅଭାବ ମଧ୍ୟରେ ଥାଇ ମଧ୍ୟ ତାକୁ ବାପା ଛେଉଣ୍ଡ ବୋଲି ଜାଣିବାର ସୁଯୋଗ ଦେଇନଥିଲି । ସେ ଗୃହଯୋଗ୍ୟା ହେବାପରେ ମୋର ସଂମ୍ପର୍କୀୟ ପରିବାର (ବିରିବାଟୀରେ) ତାକୁ ବିବାହ ଦେଇଥିଲି । କାରଣ ସମ୍ପର୍କୀୟ ପରିବାର ଭିତରେ ତାର କିଛି ଅସୁବିଧା ହେବନାହିଁ । ବୟସ ଛୋଟ ଥିବାରୁ ତାକୁ ଚଳାଇନେବେ ।

ସେ ତିନୋଟି ସନ୍ତାନର ଜନନୀ ହେଲା । ବିଧିର ବିଧାନ ବିଚିତ୍ର । ଆକସ୍ମିକ ଭାବେ ତା' ସ୍ୱାମୀର ମୃତ୍ୟୁ ହେଲା ଆମ ଅଲିଅଳୀ ଝିଅ ପ୍ରତି ଦାରୁଣ ଆଘାତ । ମୋ ଭାଗ୍ୟରେ, ତାର ବୈଧବ୍ୟ ଦେଖିବାରଥିଲା ।

ସେତ ଆଜନ୍ମ ଦୁଃଖୀ, ଦୁଃଖ ତାକୁ କେବେ ପରିତ୍ୟାଗ କରିନାହିଁ । ତାର ବଡପୁଅ ବିଭାଘରକୁ ମୋତେ ବହୁତ ଖୁସିରେ ତା ଘରକୁ ନେଇଥିଲା । କିନ୍ତୁ ସେ ଆନନ୍ଦ ତାର ବେଶୀଦିନ ରହିଲା ନାହିଁ । ତା ବଡପୁଅ ନାଟୁର ଆକସ୍ମିକ ବିୟୋଗ କଟା ଘା'ରେ ଚୁନ ମାରିଦେଇଥିଲା ।

ଯଦି ପ୍ରାରବ୍ଧ ସତ୍ୟ ତେବେ ଭଗବାନ କଣ ତାର ପ୍ରାୟଶ୍ଚିତ ସାରି ନାହାଁନ୍ତି । କଷ୍ଟ ସହିବାର ସୀମା ଟପିଗଲାଣି । ଭଗବାନ ଏଭଳି ଦୁଃଖ କୌଣସି ଶତ୍ରୁକୁ ନ ଦିଅନ୍ତୁ ।

## (ଧ)

ମହତ୍‌ପୁରୁଷ ମାନଙ୍କ ଭାଷାରେ କଳିଯୁଗର ଶ୍ରେଷ୍ଠ ହେଲା :-

(୧) ଅନ୍ନଦାନ

(୨) ଗୋରୁ ସେବା

(୩) ଗୁରୁ ସେବା

ମୁଁ ସୁନ୍ଦରଗାଁ ସ୍କୁଲ ହଷ୍ଟେଲ କଥା ବୁଝୁଥିବା ବେଳେ ଅନ୍ନଦାନ ପରି ମହତ ଦାନର ପରୋକ୍ଷ ଭାବେ ସୁଯୋଗ ନେଇଛି । ଅନେକ ଗରିବ ଛାତ୍ର ଆଣି ବିଦ୍ୟାଳୟ ହଷ୍ଟେଲରେ ଫ୍ରିରେ ରଖିବାର ବନ୍ଦୋବସ୍ତ କରାଇଛି । ଏପରିକି ମୋ ପାଇଁ ହଷ୍ଟେଲରେ ରଖାଯାଇଥିବା ଖାଦ୍ୟ ଉପାସରେ ସ୍କୁଲକୁ ଆସିଥିବା ପିଲାଙ୍କୁ ଦେଇଦେଇଥାଏ ।

ପରିଣତ ବୟସରେ ଉପର ବର୍ଣ୍ଣିତ ଅନେକ ଛାତ୍ର ମଧ୍ୟ ମନେପକାଇ ମୋ ପାଖକୁ ଆସିଛନ୍ତି ।

ମୁଁ ତ ଗୋଟିଏ ଅଭାବ ସଂସାରର ମାଲିକ ଥିଲି ଘରେ କ୍ଷୀର ଖାଇବା ପାଇଁ ଏବଂ ଘସି ଜାଳିବା ପାଇଁ ଯେଉଁ ଗାଈ ରଖିଥିଲି ତାର ବଂଶ ବଢ଼ି ଭବିଷ୍ୟତରେ ୬ ସଂଖ୍ୟା ହୋଇଥିଲା । ମୋ ଭାଉଜ ଏବଂ ଗନି ବୋଉ ସେମାନଙ୍କର ତତ୍ତ୍ୱ ନେଉଥିଲେ । ସେମାନଙ୍କ ଠାରୁ ଯାହା କ୍ଷୀର ପାଉଥିଲି ମୋ ପରିବାର ପାଇଁ ଯଥେଷ୍ଟ ଥିଲା । ପିଲାମାନଙ୍କୁ କ୍ଷୀର ଭାତ ଖୁଆଇ ସ୍କୁଲ ଯିବାର ଏବଂ ରାତିରେ ରୁଟି ଓ କ୍ଷୀର ଖୁଆଇବାର ଅଭ୍ୟାସ କରାଇଥିଲେ ।

ଭାଉଜ (କିନିବୋଉ) ଏବଂ ଗନିବୋଉ ଗାଈମାନଙ୍କର ତତ୍ତ୍ୱ ନେଉଥିଲେ । ଘରେ ଘିଅ, ଦହି, ଛେନାର ଅଭାବ ନ ଥିଲା ।

ଗନି, ଫନି ବାହାରକୁ ପଢ଼ିବାକୁ ଗଲାପରେ ଘର ଖର୍ଚ୍ଚ ପରେ ବଳୁଥିବା କ୍ଷୀର ଲାଗୁଆ ଦେଇ ଦୈନନ୍ଦିନ ଖର୍ଚ୍ଚ ପାଇଁ କିଛି ସାହାଯ୍ୟ ପାଉଥିଲି ।

ପୂର୍ବରୁ ବହୁବାର କହିଛି ବିପଦ ସଦା ସର୍ବଦା ମୋ ସାଥିରେ ବନ୍ଧୁତା

କରିଛି । ହଠାତ୍ ମୋ ଘରେ ଥିବା ଗାଈମାନେ ରୋଗାକ୍ରାନ୍ତ ହେଲେ । ସମସ୍ତ ପ୍ରକାର ଚେଷ୍ଟା ସତ୍ତ୍ୱେ ମୋର ଗୁହାଳ ଧୋଇ ହୋଇଗଲା । ଘରେ ଛୁଅଁ–ଦେବାପାଇଁ ଗୋବର ମିଳିଲା ନାହିଁ । ଗନି ବୋଉ ଗୋଟିଏ ଛୋଟିଆ ବାଛୁରୀ ଆଣି ପାଳିଲେ । ଦିନେ ସେଇ ବାଛୁରୀର ଗଜା ଶିଙ୍ଘ ଗନି ବୋଉର ଗୋଟିଏ ଆଖି ନଷ୍ଟ କରିଦେଲା । ପୁଅ, ଜ୍ୱାଇଁ ଭୁବନେଶ୍ୱରରେ ଡାକ୍ତରଖାନାରେ ରଖି ଚିକିତ୍ସା କରାଇଥିଲେ । କିନ୍ତୁ ଗନି ବୋଉ ସବୁଦିନ ପାଇଁ ଗୋଟିଏ ଆଖିରୁ ଦୃଷ୍ଟିଶକ୍ତି ହରାଇ ବସିଥିଲେ ।

## (ନ)

ଗନିର ଅସୁସ୍ଥତା ମଧ୍ୟରେ ତାକୁ ଭୁବନେଶ୍ୱର ପାଠ ପଢାଇବାକୁ ପଠାଇଥିଲି । ଆମେ ସ୍ୱାମୀ ସ୍ତ୍ରୀ ଗନିର ବିପଦ ପାଇଁ ଚିନ୍ତିତଥାଉ । ଗନି ମଧ୍ୟ ସାଂଗରେ ଔଷଧ ଧରି ରଖିଥାଏ । ନିଜର ସ୍ୱାସ୍ଥ୍ୟ ପ୍ରତି ସଚେତନ ହୋଇ ନାକରେ ପାଣି ପିଇବା ଏବଂ ପ୍ରାଣାୟମ୍ ଆଦି ଶିକ୍ଷା କରୁଥିବାର ଖବର ପାଏ ।

୧୯୭୦ ମସିହା ଦଶହରା ଛୁଟି । ଗାଁକୁ ଗନି ଆସିଥାଏ । ସାଙ୍ଗରେ ଆଣିଥାଏ ଗୋଟିଏ ଫଟୋ ଓ ଛୋଟିଆ ଡବା, ସେ ଶ୍ରୀ ଶ୍ରୀ ଠାକୁର ଅନୁକୂଳଚନ୍ଦ୍ରଙ୍କର ଆଶ୍ରୟ ନେଇଥାଏ । ଘରେ ଆଇଁଷ ଖାଇଲା ନାହିଁ । ଏସବୁ ଦେଖି ଆମେ ଦୁଇ ଜଣ ଭାବିଲୁ ସେ ବରଂ ବାବାଜୀ ହୋଇଯାଉ, ବଞ୍ଚିକି ଥାଉ ।

କ୍ରମେ ଗନି ଆରୋଗ୍ୟ ଲାଭ କରୁଥାଏ । ଦିନେ ଗନି ସାଥିରେ, ଋତ୍ୱିକ୍ ଁ ଚନ୍ଦ୍ରଶେଖର ମହାପାତ୍ରଙ୍କୁ ନେଇ ଘରେ ପହଞ୍ଚିଲା । ସେ ସେଦିନ ଆମ ଘରେ ଅବସ୍ଥାନ କଲେ । ସତ୍‌ସଂଗ ବିଷୟରେ ଆମରତ କିଛି ଧାରଣା ନ ଥାଏ । ଆମେ ଦୁଇଜଣ ଚନ୍ଦ୍ରଶେଖର ଭାଇନାଙ୍କୁ କହିଲୁ ଗନିର ଦେହ ଭଲ ହୋଇଗଲେ ସେ ବାବାଜୀ ହୋଇ ମଠରେ ରହିବ । ଚନ୍ଦ୍ରଶେଖର ଭାଇନା ହସି ଦେଇ ଉତ୍ତର ଦେଇଥିଲେ । ମା' ବାପା ଭାଇମାନଙ୍କ ମଧ୍ୟରେ ରହି ସତ୍‌ନାମ ମନ୍ତ୍ର ଧରି ସଂସାର କରିବ ।

ଚନ୍ଦ୍ରଶେଖର ଭାଇନାଙ୍କ ମାର୍ଫତରେ ଆମର ସମସ୍ତ ପରିବାର ସତ୍‌ନାମ ଗ୍ରହଣ କରିଥିଲୁ । ଶ୍ରୀ ଠାକୁରଙ୍କୁ ଗ୍ରହଣ କରିବା ପରେ ବିପଦକୁ ଟାଳି ଦେବାର ଶକ୍ତି ମୁଁ ପାଇଛି । ଇଷ୍ଟଭୃତ୍ତି ଓ ପ୍ରାର୍ଥନା ବ୍ୟତୀତ ଅନ୍ୟକିଛି ଜାଣିବାର ମୁଁ ସୁଯୋଗ ପାଇନି । ବହୁବାର ଭୁବନେଶ୍ୱର ଏବଂ ପୁରୀରେ ଶ୍ରୀ ଶ୍ରୀ ବଡଦାଙ୍କ ସାନିଧ ଲାଭ କରିବାର ସୁଯୋଗ ପାଇଛି ।

୧୯୭୫–୭୭ ମସିହା ଶ୍ରୀ ଶ୍ରୀ ବଡଦା ପୁରୀରେ ଅବସ୍ଥାନ କରିଥାନ୍ତି, ଆଜି ଯେଉଁଠାରେ ଠାକୁର ବାଡିର ସୁନ୍ଦରମନ୍ଦିର, ପ୍ରାସାଦ ସେଠାରେ ଏକ ପୁରୁଣା ରାଜକୀୟ ଘରଥାଏ । ସେ ଘରର ସମୁଦ୍ରକୁ ମୁହଁକରି ୧୦ଟି ପାହାଚ ପରେ ଏକ ବଡ ଦ୍ୱାର । ସେହି ଦ୍ୱାର ନିକଟରେ ବଡଦା ବସିଥାନ୍ତି । ତାଙ୍କ ସାମନାରେ କିଛି ଭକ୍ତ ଉପସ୍ଥିତ ଥାନ୍ତି । ମୁଁ ସେଠାକୁ ଯିବା ପ୍ରଥମ । ସାଙ୍ଗରେ ମୋ ସାନପୁଅ ଟନିଥାଏ । ଆମେ ବଡଦାଙ୍କୁ ପ୍ରଣାମ କଲୁ ।

ମୋ ଭଳି ଦୁଃଖି ସହିତ ଶ୍ରୀ ଶ୍ରୀ ବଡଦା କଣ କଥା ହେବେ ? ତାଙ୍କ ଶ୍ରୀମୁଖରୁ ଯଦି ଆଶୀର୍ବାଦ ପାଆନ୍ତି ମୋ ପରିବାର କୁଶାନ୍ତି ମିଳନ୍ତା ।

ମନରେ ଏକଥା ଭାବି ଶ୍ରୀ ବଡଦାଙ୍କୁ ଦୁଇପାହାଚ ଚଡି ଚାହିଁ ରହିଲି । ୩/୪ ମିନିଟ୍ ପରେ ବଡଦା ମତେ ହାତ ଠାରି ଡାକିଲେ, ମୁଁ ପୁଅକୁ ଧରି ଶୀଘ୍ର ଶୀଘ୍ର ପାହାଚ ଚଢି ବଡଦାଙ୍କ ପାଖକୁ ଯାଇ ପ୍ରଣାମ କଲି । ଶ୍ରୀ ବଡଦା ମତେ ପଚାରିଲେ ଘର କେଉଁଠି, କେତେ ଦୂର । ମୁଁ ଗ୍ରାମର ନାମ ଓ ଏଠାରୁ ୧୦୦ କିଲୋମିଟର ହେବ ବୋଲି କହିଲି । ଶ୍ରୀ ଶ୍ରୀ ବଡଦା ମୋ ମୁହଁକୁ ଚାହିଁ ହସିଦେଲେ । ଆଜିବି ଶ୍ରୀ ଶ୍ରୀ ବଡଦାଙ୍କ ଶୁଭ୍ରଦନ୍ତ ପଂକ୍ତି ମୋ ଆଖି ଆଗରେ ନାଚିଯାଏ ।

ଜନୈକ ପିଲାକୁ ଡାକି ଏ ଭାଇଙ୍କୁ (ମୋତେ) ଆନନ୍ଦ ବଜାରେ ଭଲକରି ଖାଇବାକୁ ଦେବାକୁ ନିର୍ଦ୍ଦେଶ ଦେଲେ । ମୁଁ ପ୍ରଣାମ କରି ଆନନ୍ଦ ବଜାରକୁ ଯିବା ସମୟରେ ନିଜକୁ ସମ୍ଭାଳି ନପାରି ପ୍ରକାଶ କରିଥିଲି ମୁଁ ସୀତା କାନ୍ତର ସମ୍ପର୍କୀୟ ଭାଇ ।

ଯେଉଁ ଦିନଠାରୁ ଶ୍ରୀ ଶ୍ରୀ ବଡଦା ମୋତେ ପେଟପୁରାଇ ଖାଇବାକୁ ଦେବାକୁ ନିର୍ଦ୍ଦେଶ ଦେଇଥିଲେ, ସେବେଠାରୁ ମୋ ପରିବାରର ଉନ୍ନତିକୁ ମୁଁ ଅନୁଭବ କରିଛି । ଘରେ ଅନେକ ଥର ସତସଂଗର ଆୟୋଜନ କରିଛି । ମୋର ଅନୁଭବ ହୋଇଛି ଯେ ସତ୍‌ସଂଗର ଆୟୋଜନ କଲେ ଘର ଓ ପାରିପାର୍ଶ୍ୱିର ଉନ୍ନତି ଆସେ । ଶ୍ରୀ ଶ୍ରୀ ଠାକୁରଙ୍କର ଅପାର କରୁଣା ଓ ଶ୍ରୀ ଶ୍ରୀ ବଡଦା ଓ ପୂଜ୍ୟପାଦ ଦାଦାଙ୍କ ଆର୍ଶୀବାଦ ମୋ ପରି ଜଣେ ଦୁଃଖୀ ଏବଂ ସାମାନ୍ୟ ପ୍ରାଇମେରୀ ସ୍କୁଲ ମାଷ୍ଟରର ସଂସାରକୁ ସରସ ସୁନ୍ଦର କରି ତୋଳିଛି । ଜୀବନରେ ସତ୍‌ଗୁରୁ ଗ୍ରହଣର ଆବଶ୍ୟକତାକୁ ମୁଁ ମର୍ମେ ମର୍ମେ ଉପଲବ୍ଧୀ କରିଛି ।

## (ପ)

ଅବସର ପରେ ଘରେ ବାହାରେ ମଧ୍ୟ ପିଲାମାନଙ୍କୁ ଶିକ୍ଷାଦାନ ଦେବାର ସୁଯୋଗ ପାଇଲି । ପୂର୍ବରୁ ମୁଁ ସେ ବିଷୟରେ କହିଛି । ଏସବୁ ପରେ ଯେଉଁ ସମୟ ମିଳେ ସେ ସମୟରେ ଘର ପଛପଟ ଓ ସାମନା ବାଡିରେ ଫୁଲଗଛ, ପନିପରିବା ଗଛ ଲଗାଇ ତାର ଯତ୍ନ ନିଏ । Basic Training ଓ E.T Traning ରେ ବଗିଚା କାମ ନିମନ୍ତେ Training ପାଇଥିଲି । ସେ ଶିକ୍ଷାକୁ ମଧ୍ୟ କର୍ମକ୍ଷେତ୍ର ବିଦ୍ୟାଳୟରେ ଫୁଲବଗିଚା କରି ପ୍ରକାଶ କରିଥିଲି । ଅବସର ପରେ ସେ ଟ୍ରେନିଙ୍ଗ ମୋର ବହୁତ କାମରେ ଆସିଲା । ଅବସର ପରେ ପିଲାଙ୍କୁ ପଢାଇବା ବାଡିବଗିଚାରେ କାମ କରିବା ନେଇ, ପରୋକ୍ଷରେ ଅନେକ ଥଟ୍ଟା ଶୁଣିଛି । ଯଥା ପିଲାମାନେ ତ ମଣିଷ ହେଲେ ତଥାପି ଲୋଭୀ ଟିଉସନ୍ କରୁଛି, ବୁଢା ଦିନେ ମାଟିହାଣି ସାଗ ବୁଣୁଛି ଇତ୍ୟାଦି । ଏଭଳି କଥା ଶୁଣି ମନେ ମନେ ବହୁତ ହସେ କାରଣ ଯେଉଁମାନେ ଥଟ୍ଟା କରନ୍ତି ଖାଲିରେ ବସିଲେ ଦୁଃଶ୍ଚିନ୍ତାରେ ଶରୀର କ୍ଷୟ ହେବା କଥା ସେମାନେ ପାଶୋରୀ ଦେଇଥାନ୍ତି ।

ପ୍ରାୟ ୯୨ ବର୍ଷ ବୟସରେ ମୁଁ ଦୀର୍ଘକାଳ ଶରୀରକୁ କାର୍ଯ୍ୟକ୍ଷମ ରଖିଥିବାରୁ ଆଜି ପର୍ଯ୍ୟନ୍ତ ନିଜର ଦୈନନ୍ଦିନ କାର୍ଯ୍ୟ ବିନା ସାହାଯ୍ୟରେ

କରିପାରୁଛି । ଜୀବନକୁ କର୍ମମୟ ରଖିଲେ ବାଜେ ଚିନ୍ତା ମନକୁ ଆସେନାହିଁ । ଏକଥା ମଧ୍ୟ ମୁଁ ଗନି ବୋଉଙ୍କ ଜୀବନ କାଳ ମଧ୍ୟରେ ଅନୁଭବ କରିଛି । ଘରକୁ ଗୋଟିଏ ପରେ ଦୁଇଟି ବୋହୂ ଆସିଲେ । ଗନି ବୋଉଙ୍କର ଗୋଟିଏ ଆଖିକୁ ବାଛୁରୀ ନଷ୍ଟ କଲାପରେ ଘରେ ଗାଈ ରଖିବା ପିଲାଏ ବନ୍ଦ କରିଦେଲେ । ବୋହୂମାନେ ଘରର ସମସ୍ତ କାମ କରିଗଲେ । ଗନି ବୋଉ ଭାଗରେ କେବଳ ଠାକୁରପୂଜା ରହିଲା । ମାତ୍ର ଦିନକୁ ୧.୩୦ଘଣ୍ଟାର କାମ । ଯିଏ ଜୀବନ ଯାକ ସକାଳ ୪ଟାରୁ କାମ ଆରମ୍ଭ କରି ରାତି ୧୨ଟାରେ କାମ ଛାଡୁଥିଲା ଦିନରେ ମାତ୍ର ୧.୩୦ଘଣ୍ଟା ନିଯୁକ୍ତି ତା ପକ୍ଷରେ ଅତିନଗନ୍ୟ । ପୂଜା ସରିବା ପରେ ବାକି ସମୟତକ କେବଳ କିନିର ଆକସ୍ମୀକ କଷ୍ଟ ଏବଂ ଛୋଟବେଳୁ ପାଖରେ ରଖି ବଢାଇଥିବା ତାଙ୍କ ଭାଇ ଧୁନ୍ଦୁର ବିୟୋଗ ବିଷୟରେ ଗନି ବୋଉ ଭାବି ଚାଲିଲେ । ତାର ପରିଣାମ ସ୍ୱରୂପ ଦୀର୍ଘଦିନ ଧରି  ରାତିରେ ଶୋଇ ପାରିଲେ ନାହିଁ । ଶେଷରେ ମାନସିକ ଭାରସାମ୍ୟ ହରାଇ ପାଗଳ ହୋଇଗଲେ । ତାଙ୍କର ସେ ଅବସ୍ଥା ମୁଁ ସହିପାରିଲି ନାହିଁ ।

ପିଲାମାନଙ୍କୁ କହି ସ୍କୁଲ ପାଖରେ ଥିବା ଆମ ଘରେ ରହିଲି । ଦିନବେଳା ଘରକୁ ଖାଇବାକୁ ଥରେ ଆସେ ରାତି ଖାଦ୍ୟ ଏବଂ ଜଳଖିଆ ପିଲାମାନେ ସେଠାରେ ଦେଇଥାଆନ୍ତି । ତଥାପି ଗନିବୋଉ ପାଗଳ ଅବସ୍ଥାରେ ମୋତେ ଦେଖି ପଚାରନ୍ତି ଖାଇ ସାରିଲଣି । ସନ୍ଧ୍ୟାରେ ନାତୁଣୀ ତାକୁ ଡାକି ପ୍ରାର୍ଥନା ପାଖେ ବସାଏ । ମୁଁ ଶୁଣୁଛି ଏବଂ ଦେଖୁଛି ପାଗଳ ଅବସ୍ଥାରେ ମଧ୍ୟ ସେ ନିର୍ଭୁଲ ଭାବେ ପ୍ରାର୍ଥନା କରନ୍ତି ।

ଅନ୍ୟପଟରେ ଭାଉଜଙ୍କ ଆଖି ଆଗରେ ତାଙ୍କ ଜ୍ୱାଇଁର ଆକସ୍ମିକ ବିୟୋଗ ଅତ୍ୟନ୍ତ କଷ୍ଟ ଦାୟକ ଥିଲା । ବାପ ଛେଉଣ୍ଡ ଝିଅ ଭାଗ୍ୟରେ ଏ ଦୁଃଖ । ତାଙ୍କର ୮୭ ବର୍ଷ ବୟସରେ Heart attack ହେଲା ପିଲାମାନେ S.C.B medical ର I.C.U ରେ ରଖି Treatment କରାଇଲେ । ସେ ଭଲ ହୋଇ ଆସିଲେ । ତାଙ୍କର ପ୍ରତ୍ୟେକ ଦିନ ଔଷଧ ଖିଆ ନିରନ୍ତର ଭାବେ ଚାଲିଲା । ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ଆହୁରି ଅନେକ ଥର Heart Attack

ହୋଇଥିଲା । ପିଲାମାନେ ତାଙ୍କୁ ବଡ ଡାକ୍ତରଖାନାକୁ ନେଇ ଭଲ କରି ଆଣୁଥିଲେ । ଗନି ବୋଉଙ୍କ ଆରୋଗ୍ୟ ନିମନ୍ତେ ପିଲା ବହୁତ ଚେଷ୍ଟା କରିଛନ୍ତି କିନ୍ତୁ ତାଙ୍କର ସମସ୍ତ ଚେଷ୍ଟା ଓ କଷ୍ଟ ପାଣିରେ ପଡିଲା । ଗନିବୋଉ ୧୯୮୩ ମାର୍ଚ୍ଚ ୧୦ ତାରିଖରେ ମୃତ୍ୟୁବରଣ କରିଥିଲେ ।

ବିଚ୍ଛେଦର ଯନ୍ତ୍ରଣା ମଧ୍ୟରେ ମୁଁ ମନକୁ ବୁଝାଏ । ଗନିବୋଉ ଯେହେତୁ ଭାଗ୍ୟବତୀ ହାତରେ ସଂଖା, ମୁଣ୍ଡରେ ସିନ୍ଦୁର ରଖି ଯୁଇରେ ଶୋଇଲେ ।

ତାଙ୍କ ମୃତ୍ୟୁର ୪ମାସ ପରେ ତାଙ୍କୁ ଝୁରୀ ଝୁରୀ ଭାଉଜବି ଚାଲିଗଲେ । ଗନିବୋଉଙ୍କ ବିଚ୍ଛେଦ ଅପେକ୍ଷା ଭାଉଜଙ୍କୁ ମୃତ୍ୟୁମତେ ବହୁତ କଷ୍ଟ ଦେଇଥିଲା । ମୁଁ ସୁନ୍ଦରଗ୍ରାମରେ ଯେଉଁମାନଙ୍କୁ ପ୍ରଥମେ ଦେଖିଥିଲି ସେମାନଙ୍କ ମଧ୍ୟରେ ଭାଉଜ ଥିଲେ । ସବୁ ପୁରୁଣା ମୁହଁ ଚାଲିଗଲା ପରେସେ ଏକା ମୋ ସହିତ ଥିଲେ । ଶେଷକୁ ସେବି ମୋତେ ଏକା କରି ଚାଲିଗଲେ ।

ଗନି ବୋଉଙ୍କ ମୃତ୍ୟୁପରେ ମୋର ମନର ବ୍ୟଥାକୁ କାହାକୁ କହିପାରିନଥିଲି । ଏହିପରି ମନର ବେଦନା "କବିତା"ରେ ଲେଖିଥିଲି ।

କୁକ୍ଷଣେ ପ୍ରଭାତିଲା ଖଳ ବିଭାବରୀ ।
ଦୁର୍ଦ୍ଦିନ ସୂଚାଏ ମୁହୁଃର୍ମୁହୁ ବର୍ଷିବାରୀ ।।
ଏକାକି ଶୟନ କକ୍ଷେ ନମାଡଇ ନିଦ ।
ସ୍ଫୁରି ବାମନେତ୍ର ମୋର ସୁଚାଏ ବିପଦ ।।
କି ବିପଦ ଅଛି ଭାଗ୍ୟେ ଭାବି ମନଛନ୍ନ ।
ସହସା ଭାସଇ ନେତ୍ରେ ଜାଗ୍ରତ ସପନ ।।
କିଏ ଯେହ୍ନେ ଆସି କହିଦେଇ ଯାଏକାନେ ।
ଭାବୁଛି ଯାଲାଗି ଭାବୁଥିବୁ ସଦାଦିନେ ।।
ବେଳୁବେଳ ମନଯେଣୁ ହୋଇଲା ଚଞ୍ଚଳ ।
ଯପିଣ ବସିଲେ କରେ ଧରି ବହି ମାଳ ।।

ଅନ୍ୟ ମନସ୍କ ହୋଇଣ ମୁଖେ ନାମ ଘୋଷି ।
ବାରମ୍ବାର ବହି କରୁ ପଡୁଥାଏ ଖସି ।।
ଜାଣିଲି ନିଶ୍ଚୟ ଘଟିବ ଅମଙ୍ଗଳ ।
ମନ୍ଦ କଥା ସିନା ଆପେ ପଡଇ ମନର ।।
ସୁ ସମ୍ବାଦ ଘେନି ଫନି ଆଜି ଫେରିବତ ।
ମାତ୍ର କିଏ ଜାଣିଥିଲା ହେବ ବିପରୀତ ।।
ଫନି କାହିଁ? କି ଦାରୁଣ ବାର୍ତ୍ତା ଦେଲା ଲୁଟୁ ।
ଘେନି ଗଲା ସଂଗେ ସଂଗେ ରୋଗୀର ହାଟକୁ ।।
ପୁଅଝିଅ ବୋହୂ ଉଚ୍ଚେ କରନ୍ତି କ୍ରନ୍ଦନ ।
ନ ପଚାରି ବୁଝିନେଲି ଶୋକର କାରଣ ।।
ସହସା ହୃଦୟ ମୋର ହୋଇଲା ବିଦୀର୍ଣ୍ଣ ।
ସ୍ୱଜନ ମମତା ତେଜି ପ୍ରିୟା ପ୍ରାଣମଣି ।।
ଚିରଦିନ ପାଇଁ ସତେ ନେଲା କି ମେଲାଣି ।
ବାଉନ ବରଷ ଥିଲା ଜୀବନର ସାଥି ।।
ତା ବିଚ୍ଛେଦ ହୃଦ କିଏ ଦିଅଇ କରତି ।
ଖଳ ବିହି ତୋର କିସ କଲି ଅପରାଧ ।।
କି ଦୋଷେ କହିଲୁ ତୁରେ ଏତେ ପରମାଦ ।
ଶେଷ କଥା ନଶୁଣି ନଦେଖି ଶେଷଦୃଶ୍ୟ । ।
ବଞ୍ଚିଥିବା ଯାଏ ରହିଗଲା ଅବଶୋଷ ।
ସୁମରି ଅଜବ କଥା ମରମ ବେଦନା ।।
ବେଳୁବେଳ ବଢିଯାଏ ଅଶେଷ ଯନ୍ତ୍ରଣା ।
ଆହାରେ ପ୍ରେୟସୀ ଆଉ କେତେ ଦିନ ପାଇଁ ।।

ଏକାକି ଛାଡିଗଲୁ ଝୁରିବାର ପାଇଁ ।
ବିଧବା ନେ'ଦ୍ଧିଣ ତୁତ ଆଗେ ଗଲୁ ଚାଲି ।।
ବିପତ୍ନୀକ ହୋଇ ମୁହିଁ ରହିବି କିପରି ।
ଏତେ କାଳ ନିଃସ୍ୱାର୍ଥରେ ସେବା କରୁଥିଲୁ ।।
ମରଣ ବେଳକୁ ନିଜ ସ୍ୱାର୍ଥକୁ ଖୋଜିଲୁ ।
ସତୀ ବ୍ରତା ତୁହି କହ ବିଧବା କଷଣ ।।
କିମ୍ୱାଇ ଭୋଗିବୁ ମୁହିଁ ସିନା ଭାଗ୍ୟହୀନ ।
ତେତେ ଝୁରିଝୁରି ଗୁଣ ସୁମରି ସୁମରି ।।
ମରିବି ମୁଁ ଅଳ୍ପଦିନେ ଆରେ ପ୍ରାଣେଶ୍ୱରୀ ।
ବାବୁରେ ଟନିଆ ତୁହିଁ ଅଟୁ ଭାଗ୍ୟହୀନ ।।
ତୋ ବୋଉ ଡାକ ହେଲାଟି ଆଜିଠୁ ସ୍ୱପନ ।
ତୁ ଥିଲୁ ତା କୋଡପୋଛା ଆଦରର ଧନ ।।
ତୋ ପ୍ରାଣରେ ବନ୍ଧାଥାଏ ତାହାର ଜୀବନ ।
ପ୍ରଥମ ପୁତ୍ରଟି ତୋର ଆରତ ଭଂଜନ ।।
ସେ ଅଟଇ ଆଲୋ ଯୁଧିଷ୍ଠି ସମାନ ।
ଦ୍ୱିତୀୟଟି ଅଟେ ତୋର ମାନି ଦୁର୍ଯ୍ୟୋଧନ ।।
ରଖୁଅଛି ଆଲୋ ସଦା ଘରର ସମ୍ମାନ ।
ଥିଲୁ ମାୟବିନୀ ଯେଣୁ ମରଣ ନିକଟ ।।
ଜାଣିପାରି ମୋହଠାରେ ନିଶ୍ଚୟ କପଟ ।
ଶାସ୍ତ୍ର କହେ ନାରୀ ମାୟା ଦେବେ ଅଗୋଚର ।।
ମତେ ଲୁଚାଇ ତୋ ପଥ କଲୁ ପରିଷ୍କାର ।
ହେଲାଣି ହେବାର ଯାହା କିମ୍ୱା ଅବଶୋଷ ।।

ବହିଯା ଲିହିଛି ଭାଲେ ଘଟିବ ଅବଶ୍ୟ ।
ଅନ୍ତିମେ ନ ଦେଖି ଅଶ୍ରୁଯୁକ୍ତ ମୁଖ ମୋର ।।
ବିଦାୟ ନେବାକୁ ସିନା କଲୁତୁ ଫିକର ।
ନାନା ପ୍ରକାରେ ମନକୁ ବୁଝାଉଛି ଯେତେ ।।
ମାତ୍ର ସେ ଅବୋଧ ମନ ନବୁଝେ କିଞ୍ଚିତେ ।
ପ୍ରେୟସୀ ତୁ ଗଲାଦିନୁ ନିଦ୍ରା କ୍ଷୁଧା ନାହିଁ ।।
ଅଦେଖାରେ ନୟନରୁ ଲୁହ ଝରୁ ଥାଉ ।
ବାପ ଘରେ ବଡଝିଅ ଥିଲୁତୁ ଦୁଲାକି ।।
ଶାଶୁଘରେ ଏକା ବୋହୂ ହେଲୁ ଅଲିଅଳି ।
ଯେ ଦିନ ମୋ ଘରେ ପକାଇଲୁ ଲକ୍ଷ୍ମୀପାଦ ।।
ଦିନୁଦିନ ବୃଦ୍ଧି ହେଲା ମୋହ ସଂପଦ ।
ତୋ ବିହୁନେ ଗ୍ରାମେ ଆଜି ପଡଇ ଚହଳ ।।
କେ ଗୁଣ ପ୍ରଶଂସା କରେ କେ ହୁଅଇ ବିକଳ ।
ପର ଦୁଃଖେ ଦୁଃଖୀ ଦୀନଜନେ ଦୟାବତୀ ।।
ବ୍ରତ ଉପାସ ପାଳନେ ଥିଲା ମେରେମତି ।
ଭାଗବତ କହେ, ପ୍ରାଣୀର ଭଲମନ୍ଦ ବାଣୀ ।।
ମରଣ କାଳରେ ତାହା ଲୋକ ମୁଖୁ ଜାଣି ।
ପୂର୍ବର ସୁକୃତ ଆଉ ପୁଣ୍ୟ କର୍ମ ଫଳ ।।
ସମସ୍ତ ସୁଯୋଗ ଆସି ମିଳେ ଏକାବେଳେ ।
ଏକା ଆସିଥାଏ ଜୀବ ଏକାଯାଏ ଚାଲ ।।
ସ୍ନେହ ମମତା ବନ୍ଧନ ସବୁଯାଏ ଭୁଲି ।
ମିଛେ ବୋଲ ମୋର ମୋର କେ ନୁହେଁ କାହାର ।।

ଯେତେ ବୁଝାଏ ମନକୁ ନ ବୁଝଇ ମୋର ।
ତୋ ବିହୁନେ ଚାରିଦଗ ଦିଶୁ ଅଛି ଶୂନ୍ୟ ।।
ସଂଗିନୀ ତୋ ମର୍ତ୍ତ୍ୟଲୀଳା ହେଲା ସମାପନ ।
ଏକା ଆସିଥିଲୁ ଏକା କରିଲୁ ଗମନ ।।
ଘେନିଛି ମେଲାଣି ଆଜି ଏତିକିରେ ମୁହିଁ ।
ବାହୁନି ବସିଲେ ଗୁଣ ତୋ ସରିବ ନାହିଁ ।।
ଟନିର ଦୋଳ ମୁକୁଟ ଦେଖିବାର ଆଶା ।
ଦେଖି ନପାରିଲୋ ତୁ ହୋଇଲୁ ନିରାଶା ।।
ପ୍ରବାଦ ରହିଛି ଜୀବ ଘଟ ଛାଡିଯିବ ।
ସ୍ୱର୍ଗଦ୍ୱାରେ ନେଇତାକୁ ଦାହ କରାଇବ ।।
ଚିତା ଭସ୍ମକୁ ଦେଇଣ, ମହୋଦଧି ଜଳେ ।
ବିସର୍ଜିଲେ ଜୀବ ମୁକ୍ତି ହୋଇଥାଏ ଭଲେ ।।
ଯେଣୁ ସାଧ୍ୱୀ ପତିବ୍ରତା, ସତୀ ଶିରୋମଣି ।
ମର ଶରୀରକୁ ଘେନିଗଲେ, ଗନି, ଫନି ।।
ସତେ ଅବା ଦେବଦୂତ, ହୋଇ ଆସିଥିଲେ ।
ପିଣ୍ଡୁ ପ୍ରାଣ ଗଲାପରେ, ତାହା ଘେନିଗଲେ ।।
ଏକାମ୍ର କାନନଠାରୁ ଶ୍ରୀ ନୀଳ କନ୍ଦର ।
ଶୋଭାଯାତ୍ରା ଚାଲିଥାଏ ଅତୀବ ସୁନ୍ଦର ।।
ରାମ ନାମ ସତ୍ୟ ପୁଣି ହରି ନାମ ସତ୍ୟ ।
ଖଇ କଉଡିରେ ପଥ, ଅତୀବ ବିଚିତ୍ର ।।
ନାମ ସଂକିର୍ତ୍ତନେ ଯାତ୍ରା, ପଡଇ ଉଛୁଳି ।
ଚଉଦିଗେ ଶୁଭୁଥାଏ ଶଂଖ ହୁଳହଳି ଗୋଳି ।।

ଚାହୁଁ ଚାହୁଁ ପହଞ୍ଚିଲା, ମହୋଦଧି ତଟ ।
ଶ୍ମଶାନ କାଳୀ ଯହିଁ କରିଛି ଆକଟ ।।
ପାପୀ ଜନମାନ ପାଇଁ ଅତି ଭୟଙ୍କର ।
ପୁଣ୍ୟବନ୍ତ ଜନ ପାଇଁ ଅତ୍ୟନ୍ତ ସୁନ୍ଦର ।।
କେ ପାପୀ କେ ପୁଣ୍ୟବନ୍ତ ତାହା ଜଣାନାହିଁ ।
ପିଣ୍ଡୁ ପ୍ରାଣ ଚାଡିଗଲେ ଏକାକାର ହୋଇ ।।
ପ୍ରାଣ ସିନା ଚାଲିଯାଏ, ପିଣ୍ଡ ଥାଏ ପଡି ।
କିଏ ଜାଣେ କିସବିହି କାହପାଇଁ ଗଢି ।।
ତେସନେକ ପିଣ୍ଡ ଗୋଟି ଥିଲା ତହିଁ ପଡି ।
ବନ୍ଧୁ ବାନ୍ଧବ ସୋଦର ରହିଥିଲେ ବେଢି ।।
ବାଲୁକା ରାଶି ଉପରେ ଶୋଭା ଯଜ୍ଞକୁଣ୍ଡ ।
ଯହିଁରେ ଆହୁତି ହେବ ପ୍ରାଣହୀନ ପିଣ୍ଡ ।।
ରିତ୍ୱୀକ ବସିଣ ବେଦମନ୍ତ୍ର ଉଚାରନ୍ତି ।
ନାମ କୀର୍ତ୍ତନରେ ଚୋଉଦିଗ ଶୋଭାପାନ୍ତି ।।
ଚାହୁଁ ଚାହୁଁ ଅଗ୍ନୀଶିଖା ଗଗନେ ଉଠିଲା ।
ହରିଧ୍ୱନୀ ସହିତରେ ଆକାଶେ ମିଶିଲା ।।
ସୂକ୍ଷ୍ମଭାବେ ସୂକ୍ଷ୍ମଯାଏ ସ୍ଥୁଳ ରହେ ପଡି ।
ସ୍ଥୁଳପୁଣି ମିଶିଯାଏ କିଛିକ୍ଷଣ ଛାଡି ।।
ଚିତାଭସ୍ମ ମିଶିଗଲା ମହୋଦଧି ଜଳେ ।
ସତେ ଅବା ମା ପରି ଧରିଥିଲା କୋଳେ ।।
ଆସିଥିଲା ଦିନେ ଯେଉଁ ଅନନ୍ତ ଗର୍ଭରୁ ।
ଫେରିଗଲା ସେ ସ୍ଥାନକୁ ଆସିଥିଲା ଯେଉଁଠାରୁ ।।

କେଉଁଠାରୁ ଆସୁଥାଏ କେଉଁଠାକୁ ଯାଏ ।
ରହିବା ସମୟେ 'ମୁଁ' ତୋର ବୋଲି କହେ ।।
ସତୀ ନାରୀର ସନ୍ତକ ସିନ୍ଦୁର ଓ ଶଂଖା ।
ଶେଷଦିନେ ଶରୀରରେ ଯାଉଥିଲେ ଦେଖା ।।
ଜନ୍ମାନ୍ତରେ ସ୍ୱାମୀସହ କରଇ ସଂସାର ।
ସେହି ସ୍ୱାମୀ ସେହିସ୍ତିରୀ ନଥାଏ ଟି ପର ।।
ସଧବା ହୋଇଣ ଯେହୁ ବଡଦାଣ୍ଡ ପରେ ।
ସ୍ୱର୍ଗଦ୍ୱାର ଯାତ୍ରା କରେ ଚଢି କୋକେଇରେ ।।
ତାର ସମଭାଗ୍ୟବନ୍ତ ନାହିଁ ସଂସାରରେ ।
ଯୁଗେ ଯୁଗେ ଥାଏ ସ୍ୱାମୀ ସନ୍ତାନ ମେଳରେ ।।
ହେ ଦାରୁଣ ମାର୍ଚ୍ଚଦଶ ତାରିଖ ମୋହର ।
ଦୂରରୁ ତୋତେ ମୁହିଁ କରୁଛି ଜୁହାର ।।
ଏଇ ଦିନ ଲୁଛିଛପି ନେଲୁମୋ ପ୍ରିୟାକୁ ।
ପୂରିଲା ତୋର ପେଟ ଖାଇଣ ତାହାକୁ ।।
କି କୁହୁକ ମନ୍ତ୍ର ତୁହି କରାଉଛୁ ନଜାଣେ ।
ଦିବା ରାତ୍ର ତୋର କଥା ପଡୁଅଛି ମନେ ।।
ତୋ ଶୋଇବା ଖଟ ସେଜ ବିଛଣା ଚଦର ।
ଟ୍ରଙ୍କ, ସୁଟ୍‌କେଶ, ଆଲମାରୀ କଞ୍ଚମାଳ ।।
ପୂଜା ଉପକରଣାଦି ନିରିମାଲ୍ୟ ପେଡି ।
ତୋର ସ୍ମୃତି ଫୁଟାଏ ରେ ମନେ ଘଡି ଘଡି ।।
ତୋ ଠାକୁର ଦାଦା ଫଟୋ, ଫଟ ନାରାୟଣ ।
ପୂଜା କରୁଥିଲୁ ଯାହା ମୁହିଁ ପ୍ରତିଦିନ ।।

ବାବୁରେ ଗନି ବାର ବର୍ଷ ତପସ୍ୟା ର ଫଳ ।
ତା ପଣତେ ବନ୍ଧା ଥିଲୁ ନିରନ୍ତରେ ।।
ଆର୍ଯ୍ୟ ନାରୀ ଉଚିତ ନାନାଦି ସଦ୍‌ଗୁଣ ।
ଏକାଧାରେ ତୋହଠାରେ ଥିଲା ପରିପୂର୍ଣ୍ଣ ।।
ଲଜ୍ଜାଶୀଳା ଶୁଚି ଶୀଳା ପୁଣି କ୍ଷମାବତୀ ।
ସନ୍ତାନ ବାତ୍ସଲ୍ୟ ଦେବ ଗୁରୁଜନେ ଭକ୍ତି ।।
ଜନ୍ମଠାରୁ ମୃତ୍ୟୁଯାଏ ତୋହର ଜୀବନୀ ।
ଲେଖିବାକୁ ଅସମର୍ଥ ମୋହର ଲେଖନୀ ।।
ନିତ ଧାମ ପଥେ ମୋର ହେବ ଦରଚୀନ ।
ନିଶ୍ଚୟ ହୋଇବ ମୋର କୃତାର୍ଥ ଜୀବନ ।।

## (ଫ)

ଗନିବୋଉ ଜନ୍ମ ଦେଇଥିବା ୪ଟି ପିଲାଙ୍କ ମଧ୍ୟରୁ ୩ଜଣଙ୍କର ଜୀବ ଦଶାରେ ଶୁଭକାମ ଦେଖିଲା । ଗନିର ଝିଅ, ମାମିର ଦୁଇପୁଅ, ଫନିର ବଡଝିଅ ପ୍ରଭୃତିଙ୍କର ବାଲ୍ୟଲୀଳାବି ଦେଖିଲେ । ଗନି ବୋଉ ଓ ଭାଉଜ (କିନୁବୋଉ) ଏ ପିଲାମାନଙ୍କୁ ତେଲ ଘସିବା, ସେକିବା, ହଳଦୀ ଲଗାଇବା ଆଦି କାର୍ଯ୍ୟକରି ଆନନ୍ଦ ପାଇଥିଲେ । କିନ୍ତୁ ଟନିର ଏସବୁ ଦେଖିବାକୁ ସେ ଦୁହିଁଙ୍କୁ ବେଳ ଅଣ୍ଟିଲା ନାହିଁ ।

ଟନି ମୋପରି ଉଚ୍ଚତାରେ ସାନ । ଗନି ବୋଉର ଦେହାନ୍ତ ପରେ ପରେ ମୁଁ ତାପାଇଁ ବାହାଘର ଖୋଜିଲି । କାରଣ ମୁଁ କାଳେ ତାର କିଛି ଦେଖିପାରିବି ନାହିଁ । ଏ ଅଜଣା ଭୟରେ ଆତଙ୍କିତ ହେଉଥିଲି । ଟନିକୁ ମେଳ ଖାଇଲାପରି ଛୋଟ ବୋହୂ ଦରକାର । ଚୌଦ୍ୱାର ନିକଟ ଟାଙ୍ଗିର (କଟକ ଜିଲ୍ଲା) ୰ମାୟାଧର ଦାସ (ପୂର୍ବତନ ପ୍ରାଥମିକ ଶିକ୍ଷକ)ଙ୍କ ସର୍ବ କନିଷ୍ଠ ଝିଅ ମୋର ସର୍ବ କନିଷ୍ଠା ବୋହୂ ହୋଇଆସିଲା । ଏକତ ଶିକ୍ଷକ ପରିବାର ତଥା ମୋ ଘରପରି ଯୌଥ ପରିବାରରୁ ତାକୁ ବାଛି ବୋହୂ କରିଆଣିଲି ।

ଫନିର ଦ୍ୱିତୀୟ ଝିଅ ଜନ୍ମ ବେଳେ ମୋ ମନଟିକେ ଦବିଗଲା । ମୁଁ ଆମ ବଜାର ପାଖ ଘର ନିକଟରୁ ଶୁଣି ଗନି ବୋଉକୁ କହିଲି ଫନିର ଆଉ ଗୋଟେ ଝିଅ ହେଲା । ସେ ସମୟରେ ଗନିବୋଉ ତାଙ୍କର ମାନସିକ ଭାରସାମ୍ୟ ହରାଇ ଆସୁଥାନ୍ତି । ସେ ଅବସ୍ଥାରେ ତାଙ୍କର ଉତ୍ତର ଥିଲା ତୁମେ ମନକଷ୍ଟ କରନା । ମୋ ଘରକୁ ତିନି ମୂର୍ତ୍ତି ଆସିଗଲେ । ଆଉ ଦୁଇଜଣ ଆସିଗଲେ ମୁଁ ପଞ୍ଚସତୀଙ୍କୁ ଜପିବି । ଗନି ବୋଉଙ୍କ କଥା ଗୁଡିକ ମୋର ସର୍ବଦା ମନ ଆନ୍ଦୋଳିତ କରେ । ଭାବେ ଠାକୁର କଣ ମୋ ଘରକୁ ଆଉ ପୁଅ ପଠାଇବେ ନାହିଁ । ଶ୍ରୀ ଶ୍ରୀ ଠାକୁର ଦୟାମୟଙ୍କ କୃପାରେ ଟନିର ପୁଅଟିଏ ହେଲା । ସେ ହେଲା ତିନି ଭାଇଙ୍କର ଦାୟଦ । ଗନି, ଫନି ସିନାଚାକିରୀ କରିଥିଲେ । କିନ୍ତୁ ଟନି ବ୍ୟବସାୟ କଲା । ତାର ରୋଜଗାର ତାର ଭାଇମାନଙ୍କଠାରୁ ଅଧିକ ।

ମୋର ବହୁତ ଛାତ୍ର ଡାକ୍ତର, ଇଂଜିନିୟର, ପ୍ରଫେସର ପଦସ୍ଥ ଅଫିସର ଏବଂ ରାଜନୀତିଜ୍ଞ ହୋଇଛନ୍ତି । ଅନେକ ପିଲା ମୋ ପାଖେ ପାଠପଢି First class ପାଇଛନ୍ତି । ମୋ ପିଲାମାନେ ଡାକ୍ତର ହେଲେ ନାହିଁ କି ପଦସ୍ଥ ଅଫିସର ହେଲେ ନାହିଁ ବା First class ପାଇଲେ ନାହିଁ ବୋଲି କେବେ ଦୁଃଖ କରିନାହିଁ । ବଂର ଗର୍ବ କରେ ଯେ ମୋ ଛାତ୍ର ଡାକ୍ତର, ଇଂଜିନିୟର, ପ୍ରଫେସର ଏବଂ ମୋ ଛାତ୍ରମାନେ ବୈଜ୍ଞାନିକ । ଶ୍ରଦ୍ଧେୟ ଉମାବଲ୍ଲଭ ଏବଂ ତୁସାର ଆମେରିକା ଓ ଜର୍ମାନରେ ପ୍ରତିଷ୍ଠିତ ।

ଗନିବୋଉ ପୁଅ ଏବଂ ଝିଅ ମଧରେ ତଫାତ୍ ଦେଖୁନଥିଲେ । ସେ ଯେଉଁ ପଞ୍ଚସତୀଙ୍କ ଉପସ୍ଥାପନା କରିଥିଲେ ତାର ମର୍ମଥିଲା ଯେ ଝିଅମାନେ କୌଣସି ପ୍ରକାରରେ ପୁଅଙ୍କ ଠାରୁ କମ୍ ନୁହଁନ୍ତି । ମୋ ପିଲାମାନେ ସିନା First class ପାଇନଥିଲେ କିନ୍ତୁ ମୋ ନାତି ଓ ନାତୁଣୀମାନେ ମାଟ୍ରିକ୍‌ରେ First class ପାଇଥିଲେ ଏବଂ ମେଧାବୃତ୍ତି ପାଇଥିଲେ । ମୋ ବଡ ନାତୁଣୀ M.A ଏବଂ M.Philରେ ସବୁଠାରୁ ଅଧିକ ନମ୍ବର ରଖିଥିଲା । ମୋର ବଡ ନାତି (ଝିଅର ପୁଅ) ଇଂଜିନିୟର । ସାନ ନାତି (ଝିଅର ପୁଅ) ଏବଂ ଦ୍ୱିତୀୟ

ନାତୁଣୀ ଇଂଜିନିୟରିଂ ପଢୁଛନ୍ତି । ୩ୟ ନାତୁଣୀ ବିଜ୍ଞାନ ଛାତ୍ରୀ, ବଡ ନାତୁଣୀଙ୍କ ବର ଅଧ୍ୟାପକ । ଯାହା ମୋ ପିଲାମାନଙ୍କଠାରୁ ପାଇନଥିଲି ମୋର ନାତି, ନାତୁଣି (ତୃତୀୟ ପୁରୁଷ) କରି ଦେଇଖାଇ ଦେଲେ ।

## (ବ)

ପିଲାବେଳେ ଖଣ୍ଡେଇତା ଘାଇର କରାଳ ଦୃଶ୍ୟ ଅନୁଭବ କରିଥିଲି । ଗାଁ ଛାଡି ଜଗମୋହନ କୁଦରେ ଆଶ୍ରୟ ନେଇଥିଲୁ । ସେଇ ତିକ୍ତ ଅନୁଭୂତିକୁ ନେଇ ଶିକ୍ଷକତା କରୁଥିବା ସମୟରେ ଆମ ଅଞ୍ଚଳରେ ବନ୍ୟା ଘରପୋଡି ଆଦି ବିପତ୍ତି ସମୟରେ ସ୍କୁଲ ପିଲାମାନଙ୍କୁ ନେଇ ରିଲିଫ କାର୍ଯ୍ୟ କରିଛି । ପରିଣତ ବୟସରେ ମହାବାତ୍ୟାର ତାଣ୍ଡବ ନୃତ୍ୟକୁ ଅନୁଭବ କରିବାକୁ ପଡିଲା । ଲୋକଙ୍କର ଦୁର୍ଦ୍ଦଶା ଶୁଣି ରିଲିଫ୍ ବାଣ୍ଟିବା ପାଇଁ ବାହାରଯିବାକୁ ଇଚ୍ଛା ହେଉଥିଲେ ମଧ୍ୟ ବାର୍ଦ୍ଧକ୍ୟର ଜନୀତ ଦୁର୍ବଳତା ଅଟ୍ଟହାସ୍ୟ କରିଥିଲା ।

ଦୀର୍ଘ କୋଡିଏ ଘଣ୍ଟାଧରି ମହାବାତ୍ୟା ନୃତ୍ୟ କରିଚାଲିଲା । ଗାଁରେ କେତେଘର ଭାଂଗିଗଲା । କେତେ ଘର ଉପରେ ଗଛପଡି ସର୍ବନାସ ହେଲା । ଆଖି ଆଗରେକେଉଁ ପୁରୁଷର ତାଳଗଛ ସବୁ ରାଶୟୀ ହେଲା । ମୋର ବହୁତ ଭୟ ଆସୁଥାଏ । କାରଣ ଆମ ଘର ଚାରିପଟେ ବଡ ବଡ ନଡିଆ, ଗୁଆଗଛ ଭାଙ୍ଗୁଥାଏ । ଯଦି ମୋର ଘର ଉପରେ ସେ ଗଛ ସବୁ ଉପୁଡି ପଡିଯିବ ତେବେ ମୁଁ ମୋର ପିଲାବେଳର ଭଂଗା ଘର ପୁଣି ଦେଖିବି । ସଂଧ୍ୟା ସମୟରେ ବାତ୍ୟାର ପ୍ରକୋପ କ୍ରମେ ବଢୁଥାଏ । ମୁଁ ଠାକୁର ଘରକୁ ଆସି ପ୍ରାର୍ଥନା କରିପାରିଲି ନାହିଁ । ଠାକୁରଙ୍କୁ ପ୍ରଣାମ କରି ତାଙ୍କ ଉପରେ ସବୁ ଛାଡିଦେଲି । ଘର ଚାରିପଟେ ଥିବା ନଡିଆ ଗଛ, ଗୁଆଗଛ ସବୁ ଉପୁଡି ଘରଠାରୁ କିଞ୍ଚିତ୍ ଦୂରରେ ପଡିଥିଲା । ମୋର ବାତ୍ୟାରେ କିଛି କ୍ଷୟକ୍ଷତି ହୋଇନଥିଲା । ଠାକୁର ସାହା ହୋଇଥିଲେ । ତହସିଲ୍‌ରୁ କ୍ଷୟକ୍ଷତି ସର୍ଭେ କରିବାକୁ ଅଧିକାରୀମାନେ

ଆସିଥିଲେ । ମୁଁ ତାକୁ କହିଥିଲି ମୋର କିଛି କ୍ଷତି ହୋଇନାହିଁ । Survey କରିବାକୁ ପଦସ୍ଥ ଅଧିକାରୀ ମହୋଦୟ ମୋ ମୁହଁକୁ ଆବାକ୍ ହୋଇ କିଛି ସମୟ ଚାହିଁରହିଥିଲେ । ଦୀର୍ଘଦିନ ପିଲାମାନଙ୍କ ଖାଇବା କଥା ଏବଂ ବିଦ୍ୟାଳୟର ବିଭିନ୍ନ ଉତ୍ସବାଦିର ଭୋଜି କଥା ବୁଝିଥିଲି । ତେଣୁ ରାତି ସର୍ବଶେଷରେ ବିଳମ୍ବରେ ଖାଇବା ମୋର ଅଭ୍ୟାସରେ ପରିଣତ ହୋଇଥିଲା । ସ୍କୁଲରେ ସମସ୍ତେ ଖାଇସାରିବା ପରେ ମୁଁ ଏବଂ ମୋ ସାଥିରେଥିବା ଶିକ୍ଷକବନ୍ଧୁ ଶେଷରେ ଖାଇଥାଉ । ଶେଷକୁ ଆମ ପାଇଁଯାହାଥାଏ ସେଥିରେ ସନ୍ତୁଷ୍ଟ ହେଉ । ଏପରିକି ମୋ ପାଇଁ ଖାଇବାକୁ ଶେଷରେ କିଛି ନଥାଏ ।

ସ୍କୁଲର ଗଣେଶ ପୂଜା ଭୋଜି ହୋଇଥାଏ ଛାତ୍ରଛାତ୍ରୀ ମାନଙ୍କ ପରେ ପାଖଆଖର ନିମନ୍ତ୍ରିତ ଅତିଥି, ବିଦ୍ୟାଳୟର ସମସ୍ତ କର୍ମଚାରୀ ଖାଇସାରିଥାନ୍ତି । ଆମେ ରହିଥାଉ ମାଷ୍ଟର ବଳରାମ, ସତ୍ୟବାଦି ବାବୁ ଓ ପିତାମ୍ବର । ସମସ୍ତ ହଣ୍ଡା, କଡେଇ, ଗୋଟିଏ ଘରେ ଆଣି ରଖିଲୁ । ଖାଇବାକୁ ଗୋଟିଏ ପତ୍ରଥାଏ । କଦଳୀପତ୍ର କାଟିବାକୁ ରାତିରେ ଭଲ ଲାଗିଲା ନାହିଁ । ବଳରାମ ସୁକୁମାରିଆ, 'ତା' ଋମ୍‌କୁ ଯାଇ ବଳିଥିବା ପତ୍ରରେ ବାଢିକରି ଆସିଲି । ମୁଁ ସତ୍ୟବାଦି, ପିତାମ୍ବର ହଣ୍ଡା ନିକଟରେ ଚୌକି ପକାଇ ବସି ଖାଇଥିଲୁ । ଏମିତି ଖାଇବାର ସୁଯୋଗ ମୋ ଜୀବନରେ ଅନେକ ଥର ଆସିଛି । କେତେବେଳେ ଖାଲି ଖିରୀ ତ କେତେବେଳେ ଖାଲି ତରକାରୀ ଖାଇଛି ।

ବର୍ତ୍ତମାନ ଆଉ ସେ ଅଭ୍ୟାସ ନାହିଁ । ବାର୍ଦ୍ଧକ୍ୟ ଜନିତ ଅସୁସ୍ଥତାରୁ ସମୟ ମୁତାବକ ଖାଇସାରି ଔଷଧ ଖାଇବାକୁ ପଡୁଛି ।

## (ଭ)

୰ନୀଳମଣି ପ୍ରଧାନ ସୁରେନ୍ଦ୍ର ଦ୍ୱିବେଦୀ ଏବଂ ୰ବାଙ୍କ ବିହାରୀ ଦାଶ ପ୍ରଭୃତି ନେତା ମାନଙ୍କ ସମ୍ପର୍କରେ ଆସି ସ୍ପଷ୍ଟବାଦୀ ଓ ନିର୍ଭିକ ହେବା ପାଇଁ

ଶିକ୍ଷା ପାଇଥିଲି । ପାଠପଢାରୁ ଚାକିରି ଶେଷ ପର୍ଯ୍ୟନ୍ତ ମୁଁ ନିର୍ଭିକ ଭାବେ ଠିକ୍ ମଣୁଥିବା କଥା ସବୁବେଳେ କହିଛି । ସେଥିପାଇଁ ମୋତେ ବହୁତ ଦାମ ଦେବାକୁ ପଡିଛି । ଏକଦା କଟକ ଜିଲ୍ଲା ପରିଷଦର ଚେୟାରମ୍ୟାନ୍ ଜାତୀୟ କବି ବୀରକିଶୋର ଦାସ ମୋର ଏପ୍ରକାର ଆଚରଣ ପାଇଁ ଭର୍ତ୍ସନା କରିଥିଲେ । ମୋର କହିବା କଥାକୁ ପରେ ଉପଲବ୍ଧି କରି ମୋତେ ଡକାଇ ବଜାରରେ ଜଳଖିଆ ମଗାଇ ଖୁଆଇଥିଲେ ।

ଂଗୌରାଙ୍ଗ ଚରଣ ଦାସ (ସ୍ୱାଧୀନତା ସଂଗ୍ରାମୀ) କଟକ ଜିଲ୍ଲା ପରିଷଦର **Chairman** ଥାନ୍ତି ସେ ମୋତେ ଡକାଇଥିଲେ । ମୁଁ ତାଙ୍କୁ କଟକ ସ୍ୱରାଜ ଆଶ୍ରମରେ ଦେଖାକଲି । ରାଜନୈତିକ ଚାପରେ ମୋତେ ଏକ କାର୍ଯ୍ୟ ସଂପାଦନ କରିବାକୁ ନିର୍ଦ୍ଦେଶ ଦେଲେ । ମୁଁ ତାଙ୍କୁ ଉତ୍ତରଦେଲି ଏପରି କାର୍ଯ୍ୟ କଲେ ଆପଣଙ୍କର ଭାବମୂର୍ତ୍ତି ନଷ୍ଟ ହେବାର ସଂଭାବନା ଅଛି । ସେ ରାଗିଯାଇ ମୋତେ କହିଲେ ଭିକାରୀ ତୁ ଉପରସ୍ଥ ଅଧିକାରୀ ମାନଙ୍କ ସହ କିପରି କହିବାକୁ ହୁଏ ତା ବୋଧେ ଜାଣିନାହୁଁ । ମୁଁ ଫେରିଆସିଲି ଏ ଘଟଣାର ପ୍ରାୟ ଦୁଇବର୍ଷ ପରେ ଗୌରୀ ଭାଇଙ୍କ ସହ ଦେଖାହେଲା । ସେ କହିଥିଲେ ଭିକାରୀ ମୁଁ ସେ ଦିନ ତୋ ଉପରେ ଅଯଥାରେ ବିରକ୍ତ ହୋଇଥିଲି । ଏହିପରି ସ୍ପଷ୍ଟ କଥା କହିଥିବାରୁ ମୋ ପାଖରେ ରଖି ମଣିଷ କରିଥିବା ମୋ ଶଳା ଂଧୁନ୍ଦ ମୋତେ ପରିତ୍ୟାଗ କରିଥିଲା ।

ପୂର୍ବରୁ କହିଛି ମୁଁ ପାଉଥିବା ଅନୁକମ୍ପା ମୂଳକ ପେନସନ ଟଙ୍କା ୬୫/–ରୁ ୩୦୦/– ହୋଇଥିଲା କିନ୍ତୁ ସେଥିରେ ଟି.ଆଇ ମିଳିବାର ବନ୍ଦୋବସ୍ତ ନଥିଲା ।

ଆମ ସମସାମୟିକ ଅବସରପ୍ରାପ୍ତ କେତେଜଣ ପ୍ରାଥମିକ ଶିକ୍ଷକଙ୍କୁ ସାଥିରେ ନେଇ ଶିକ୍ଷା ସଚୀବ, ଶିକ୍ଷାମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ ଙ୍କୁ ଦେଖାକରିଥିଲି ।

ମୁଁ ସମସ୍ତ ଶିକ୍ଷକ ମାନଙ୍କର ନେତୃତ୍ୱ ନେଇଥିବାରୁ ମୋତେ ସବୁକଥା କହିବାକୁ ପଡିଥିଲା । ଶ୍ରେଣୀରେ ପିଲାଙ୍କୁ ଅଙ୍କ ପଢାଇବା ପରି କହିଥିଲି ଟ୩୦୦.୦୦କୁ (ମାସିକ) ୩୦ ଦିନରେ ହରିଲେ ଭାଗଫଳ ହେଲା ଟ୧୦.୦୦ ଦିନକୁ ୧୦.୦୦ଟଙ୍କା ଖର୍ଚ୍ଚ କରି ଆପଣଙ୍କ ଘରେ ଲାଗୁଥିବା ମୁଲିଆ ଚଳିପାରିବ କି ?

ଉପର ବର୍ଣ୍ଣିତ ଅଧିକାରୀମାନଙ୍କୁ ମୋର ପ୍ରଶ୍ନଥିଲା ଆପଣ ବିନା ପ୍ରାଥମିକ ଶିକ୍ଷାରେଏତେ ବଡ ସ୍ଥାନ ଅଧିକାର କରିଛନ୍ତି କି ? ତେବେ ଯିଏ ଆପଣଙ୍କୁ ପ୍ରଥମେ ପାଠପଢା ଶିଖାଇଥିଲା ସେ ଶିକ୍ଷକ ସମାଜ ପ୍ରତି ଏପରି ଅବହେଳା କରୁଛନ୍ତି କାହିଁକି ? ସେଠାରେ ମୋର ହୃଦବୋଧ ହୋଇଥିଲା ଯେ ସରକାର ନିୟମାଧୀନ ଏବଂ କୌଣସି ନୀତିନିୟମ ନଥାଇ କିଛି କରି ପାରିବ ନାହିଁ । ତେଣୁ ପ୍ରାଥମିକ ଶିକ୍ଷକ ମହାସଂଘର ପ୍ରତିଷ୍ଠାତା ସଭାପତି ଏବନମାଳୀ ବ୍ରହ୍ମଚାରୀଙ୍କ ନିର୍ଦ୍ଦେଶରେ ଆମେ ସମସ୍ତେ ହାଇକୋର୍ଟରେ ନ୍ୟାୟ ପାଇଁ ମକଦ୍ଦମା କଲୁ । ମାନ୍ୟବର ନ୍ୟାୟାଳୟ ସହୃଦୟରେ ଆମ ଆବେଦନକୁ ବିଚାର କରି ସରକାରଙ୍କୁ ଆମ ପରି ଜିଲ୍ଲାବୋର୍ଡରୁ ଚାକିରି ଆରମ୍ଭ କରିଥିବା ପ୍ରାଥମିକ ଶିକ୍ଷକମାନଙ୍କୁ ସର୍ବନିମ୍ନ Pension ସହିତ T.I ଦେବାପାଇଁ ନିର୍ଦ୍ଦେଶ ଦେଲେ । ଫଳରେ ଆମ ସମୟରେ ଅବସରପ୍ରାପ୍ତ ପ୍ରାଥମିକ ଶିକ୍ଷକମାନେ ବର୍ତ୍ତମାନ ମାସକୁ ୨୦୦୦ଟଙ୍କାରୁ ଅଧିକ ପେନ୍‌ସନ୍ ପାଉଛନ୍ତି ।

ମନରେ ଆନନ୍ଦ ଆସେ । ବର୍ତ୍ତମାନ ପ୍ରାଥମିକ ଶିକ୍ଷକମାନେ ଅବସର ପରେ ସରକାରଙ୍କ Pension ନିୟମାନୁଯାୟୀ Pensions Family Pension ଉପଭୋଗ କରୁଛନ୍ତି । ମୋର ସ୍ପଷ୍ଟକଥା ଏବଂ ନିର୍ଭିକ ଉତ୍ତର ନିମନ୍ତେ ମୁଁ ବହୁ ଅସୁବିଧାରେ ପଡିଥିଲେ ବି ଜୀବନ କାଳରେ ତାକୁ ଛାଡିପାରିନାହିଁ ।

## (୩)

୨୦୦୦ ମସିହା ମୋ ପାଇଁ ଚୀରସ୍ମରଣୀୟ । ସେଦିନ ସୁନ୍ଦରଗ୍ରାମ ଉଚ୍ଚବିଦ୍ୟାଳୟର ସୁବର୍ଣ୍ଣ ଜୟନ୍ତି ଉତ୍ସବ ପାଳନ ହେଉଥାଏ । ସୁନ୍ଦରଗ୍ରାମ ଉଚ୍ଚବିଦ୍ୟାଳୟର ସମସ୍ତ ପୁରାତନ ଛାତ୍ର ଉପସ୍ଥିତଥାନ୍ତି । ବିଦ୍ୟାଳୟରେ କାର୍ଯ୍ୟ କରିଥିବା ସମସ୍ତ ପୁରାତନ ଶିକ୍ଷକ ମାନଙ୍କୁ ସମ୍ମାନୀତ କରାଇବା ପାଇଁ ଡକାଯାଇଥାଏ । ମୁଁ ଂହରିବାବୁ, ଂଧଡିଭାଇନା ଏବଂ ପୁରୀର ଭିକାରୀ ତ୍ରୀପାଠି ବିଦ୍ୟାଳୟର ସର୍ବପ୍ରଥମେ ଶିକ୍ଷକ ହୋଇଥିବାରୁ ଆମ୍ଭମାନଙ୍କୁ ମୁଖ୍ୟମନ୍ତ୍ରୀ ଉପଢୌକନ ଦେବା ନିମନ୍ତେ ବ୍ୟବସ୍ଥା ହୋଇଥାଏ । ହରିବାବୁ ଅସୁସ୍ଥ ଥିବାରୁ ଅନୁପସ୍ଥିତ ଥିଲେ । ଆମ ମାନଙ୍କୁ ଏକ ସ୍ୱତନ୍ତ୍ର ସ୍ଥାନରେ ବସିବାକୁ ଦିଆଯାଇଥିଲା । ମୋର କାନକୁ ଭଲ ଶୁଭୁନଥିବାରୁ ବନ୍ଧୁ ବଳରାମର ନିର୍ଦ୍ଦେଶରେ ମୋର Sound Box ନିକଟରେ ବସିବାର ବନ୍ଦୋବସ୍ତ କରାଯାଇଥିଲା ।

ବିରାଟ ଜନ ସମାଗମ । ସଭା ଆରମ୍ଭରେ ଉଦ୍‌ଘାଟନୀ ଭାଷଣ ଦେଇଥିଲେ । ମୋର ଶ୍ରଦ୍ଧେୟ ଛାତ୍ର ଶଙ୍କର (ପ୍ରଶାନ୍ତ ମିଶ୍ର) ଭାଷଣର ଆରମ୍ଭରେ କହିଥିଲା । "ଯେଉଁ ଭିକାରୀ ସାର ଆମ୍ଭମାନଙ୍କୁ ପ୍ରଥମେ ଅକ୍ଷର ଶିଖାଇ ଥିଲେ । ସେ ଆଜି ଉପସ୍ଥିତ । ମୁଁ ସର୍ବ ପ୍ରଥମେ ଆଦ୍ୟଗୁରୁ ଭିକାରୀ ସାରଙ୍କୁ ପ୍ରଣିପାତ ଜଣାଇ ବକ୍ତବ୍ୟ ଆରମ୍ଭ କରୁଛି ।" ଖୁସିରେ ମୋ ଛାତି ଫାଟି ଯାଉଥାଏ । ସଭା ସରିଲା ପରେ ମାଇକ୍ରୋଫୋନରେ ଆମ ତିନି ଜଣଙ୍କ ନାମ ଘୋଷଣା କରାଗଲା । ମୋତେ ମଞ୍ଚ ଉପରକୁ ଯିବାକୁ କଷ୍ଟ ହେଉଥିବାରୁ ବଳରାମ ମୋ ହାତଧରି ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ନିକଟରେ ପହଞ୍ଚାଇଥିଲା । ମଞ୍ଚ ଉପରୁ ପାଖରେ ବଳରାମ ସହିତ ବିରାଟ ଜନତାକୁ ଲକ୍ଷକଲି । ମନେପଡିଗଲା ଏମିତି ବଳରାମ ସହିତ ମଞ୍ଚ ଉପରେ ଅନେକ ନାଟକରେ

ଛିଡା ହୋଇଥିଲି । ସେ ଦିନ ମୋର କଳାର ଚାତୁରୀ ଦେଖାଇବାର ନଥିଲା । ସେଥିଲା ମୋ ଜୀବନରେ ମଞ୍ଚ ଉପରର ଶେଷ ଦୃଶ୍ୟ । ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଠାରୁ ଉପଢୌକନ ଗ୍ରହଣ କରିବା ପରେ ସ୍ୱତଃ ଆଶୀର୍ବାଦାତ୍ମକ ହାତ ମୋର ଛାତ୍ର ମାନଙ୍କ ପାଇଁ ଉପରକୁ ଉଠିଗଲା । ମଞ୍ଚରୁ ଫେରିବା ସମୟରେ ମୋ ଆଖିରୁ ଝରିଗଲା ଆନନ୍ଦର ଅଶ୍ରୁ । ସେ ଦିନ ସମସ୍ତ ପୁରୁଣା କଥା ମୋ ଆଖି ଆଗରେ ନାଚିଗଲା ଏବଂ ମୋ ଶିକ୍ଷକ ଜୀବନ ସାର୍ଥକ ହେଲାବୋଲି ଅନୁଭବ କଲି । ସୁନ୍ଦରଗ୍ରାମ ଉଚ୍ଚବିଦ୍ୟାଳର ସୁବର୍ଣ୍ଣ ଜୟନ୍ତି ଉତ୍ସବ ଥିଲା ମୋ ନିମନ୍ତେ ଏ ଜନ୍ମର ଶେଷ ଉତ୍ସବ । କାରଣ ଯେଉଁ ଉତ୍ସବ ମୋ ଉଦ୍ଦେଶ୍ୟରେ ଭବିଷ୍ୟତରେ ଅନୁଷ୍ଠିତ ହେବ ତାକୁ ଉପଭୋଗ କରିବାକୁ ମୁଁ ନଥିବି ।

ମା' ଗର୍ଭରୁ ହେତୁ ହେଲା ପର୍ଯ୍ୟନ୍ତ ଯାହା ସବୁ ଘଟିଥିଲା ତାକୁ ମୁଁ ଜାଣିନଥିବାରୁ ସ୍ୱରବର୍ଣ୍ଣ ମଧ୍ୟରେ ସିମୀତ ରଖିଦେଲି । ବ୍ୟଞ୍ଜନ ବର୍ଣ୍ଣ "କ"ରୁ ମୋର ଜୀବନ ଚକ୍ରକୁ ଆରମ୍ଭ କରି "ମ" ପର୍ଯ୍ୟନ୍ତ ନେଇଗଲି । ଦାୟଦ ଏବଂ ମୋର ଶ୍ରଦ୍ଧେୟର ଛାତ୍ରମାନେ ଅବଶିଷ୍ଟ ପୂର୍ଣ୍ଣକରିବେ.................



ଛିଡା ହୋଇଥିଲି । ସେ ଦିନ ମୋର କଳାର ଚାତୁରୀ ଦେଖାଇବାର ନଥିଲା । ସେଥିଲା ମୋ ଜୀବନରେ ମଞ୍ଚ ଉପରର ଶେଷ ଦୃଶ୍ୟ । ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଠାରୁ ଉପଢୌକନ ଗ୍ରହଣ କରିବା ପରେ ସ୍ୱତଃ ଆଶୀର୍ବାଦାତ୍ମକ ହାତ ମୋର ଛାତ୍ର ମାନଙ୍କ ପାଇଁ ଉପରକୁ ଉଠିଗଲା । ମଞ୍ଚରୁ ଫେରିବା ସମୟରେ ମୋ ଆଖିରୁ ଝରିଗଲା ଆନନ୍ଦର ଅଶ୍ରୁ । ସେ ଦିନ ସମସ୍ତ ପୁରୁଣା କଥା ମୋ ଆଖି ଆଗରେ ନାଚିଗଲା ଏବଂ ମୋ ଶିକ୍ଷକ ଜୀବନ ସାର୍ଥକ ହେଲାବୋଲି ଅନୁଭବ କଲି । ସୁନ୍ଦରଗ୍ରାମ ଉଚ୍ଚବିଦ୍ୟାଳର ସୁବର୍ଣ୍ଣ ଜୟନ୍ତି ଉତ୍ସବ ଥିଲା ମୋ ନିମନ୍ତେ ଏ ଜନ୍ମର ଶେଷ ଉତ୍ସବ । କାରଣ ଯେଉଁ ଉତ୍ସବ ମୋ ଉଦ୍ଦେଶ୍ୟରେ ଭବିଷ୍ୟତରେ ଅନୁଷ୍ଠିତ ହେବ ତାକୁ ଉପଭୋଗ କରିବାକୁ ମୁଁ ନଥିବି ।

ମା' ଗର୍ଭରୁ ହେତୁ ହେଲା ପର୍ଯ୍ୟନ୍ତ ଯାହା ସବୁ ଘଟିଥିଲା ତାକୁ ମୁଁ ଜାଣିନଥିବାରୁ ସ୍ୱରବର୍ଣ୍ଣ ମଧ୍ୟରେ ସିମୀତ ରଖିଦେଲି । ବ୍ୟଞ୍ଜନ ବର୍ଣ୍ଣ "କ"ରୁ ମୋର ଜୀବନ ଚକ୍ରକୁ ଆରମ୍ଭ କରି "ମ" ପର୍ଯ୍ୟନ୍ତ ନେଇଗଲି । ଦାୟଦ ଏବଂ ମୋର ଶ୍ରଦ୍ଧେୟର ଛାତ୍ରମାନେ ଅବଶିଷ୍ଟ ପୂର୍ଣ୍ଣକରିବେ................




ମୋ ଆତ୍ମ କଥାର ଭାଗୀଦାର
୰ କୃଷ୍ଣପ୍ରିୟା
ଦିବଗଂତ - ୧୦-୦୩-୧୯୯୩